ଜନସେବୀ

# ପଣ୍ଡିତ ଗୋବିନ୍ଦ ରଥ

ଲେଖକ—

ପଣ୍ଡିତ ନରସିଂହ ମହାପାତ୍ର

ଦ୍ୱିତୀୟ ସଂସ୍କରଣ

ପ୍ରକାଶକ—

ନିଉ ଷ୍ଟୁଡେଣ୍ଟସ୍ ଷ୍ଟୋର୍ସ ଲି:

ବ୍ରହ୍ମପୁର : କଟକ : ସମ୍ବଲପୁର

୧୯୫୫

## ଜନସେବୀ

# ପଣ୍ଡିତ ଗୋବିନ୍ଦ ରଥ

—ଜନ୍ମ—

"ଜାତି ଇତିହାସ ଜାତିର ନିର୍ଝର,
ତହିଁ ବହେ ସଦା ଜାତି ପ୍ରାଣଧାର,
ସେ ଧାରରୁ ନୀର ପିଇଛନ୍ତି ଯେ ନର
ନିଶ୍ଚୟ ହେବ ସେ ଜାତି କର୍ମବୀର ।"

—ଗୋପବନ୍ଧୁ

ଭାରତବର୍ଷ ବ୍ରିଟିଶ ଅଧିକାରକୁ ଆସିବା ପରେ ଭାରତରେ ଏକ ନବ ଯୁଗର ସୂତ୍ରପାତ ହେଲା ଓ ନୂତନ ସଭ୍ୟତାର ଢେଉରେ ଭାରତର ପ୍ରାୟ ସବୁ ପ୍ରଦେଶ ପ୍ଳାବିତ ହୋଇଥିଲା । ସେତେବେଳେ ଆମମାନଙ୍କର ଜନ୍ମଭୂମି ଉତ୍କଳ, ସେହି ପାଶ୍ଚାତ୍ୟ ସଭ୍ୟତାରୁ ବହୁଦୂରରେ ରହିଥିଲା । ଭାରତର ଅନ୍ୟାନ୍ୟ ପ୍ରଦେଶ ଜାତୀୟ ଉନ୍ନତି ଦିଗରେ ବହୁଦୂର ଅଗ୍ରସର ହେବା ପର୍ଯ୍ୟନ୍ତ ଆମ ଦେଶବାସୀ ନୀରବ, ନିସ୍ପନ୍ଦ ଓ ନିଶ୍ଚେଷ୍ଟ ରହିଥିଲେ । ସେହି

## ସୂଚୀପତ୍ର





## ଜନସେବୀ

# ପଣ୍ଡିତ ଗୋବିନ୍ଦ ରଥ

—ଜନ୍ମ—

"ଜାତି ଇତିହାସ ଜାତିର ନିର୍ଝର,
ତହୁଁ ବହେ ସଦା ଜାତି ପ୍ରାଣଧାର,
ସେ ଧାରରୁ ନୀର ପିଅନ୍ତି ଯେ ନର
ନିଶ୍ଚୟ ହେବ ସେ ଜାତି କର୍ମବୀର ।"

—ଗୋପବନ୍ଧୁ

ଭାରତବର୍ଷ ବ୍ରିଟିଶ ଅଧିକାରକୁ ଆସିବା ପରେ ଭାରତରେ ଏକ ନବ ଯୁଗର ସୂତ୍ରପାତ ହେଲା ଓ ନୂତନ ସଭ୍ୟତାର ତେଜରେ ଭାରତର ପ୍ରାୟ ସବୁ ପ୍ରଦେଶ ଉଦ୍ଭାସିତ ହୋଇଥିଲା । ସେତେ-ବେଳେ ଆମମାନଙ୍କର ଜନ୍ମଭୂମି ଉତ୍କଳ, ସେହି ପାଶ୍ଚାତ୍ୟ ସଭ୍ୟତାଠାରୁ ବହୁଦୂରରେ ରହିଥିଲା । ଭାରତର ଅନ୍ୟାନ୍ୟ ପ୍ରଦେଶ ଜାତୀୟ ଉନ୍ନତି ଦିଗରେ ବହୁଦୂର ଅଗ୍ରସର ହେବା ପର୍ଯ୍ୟନ୍ତ ଆମ ଦେଶବାସୀ ନୀରବ, ନିସ୍ପନ୍ଦ ଓ ନିଶ୍ଚେଷ୍ଟ ରହିଥିଲେ । ସେହି

ସମୟରେ ଯେଉଁ ଜନସେବୀ କର୍ମୀ ପୁରୁଷମାନେ ଓଡ଼ିଶାବାସିଙ୍କ ପ୍ରାଣରେ ସର୍ବ ପ୍ରଥମେ ନବ ଜାଗରଣ ଆଣିଥିଲେ, ସେମାନଙ୍କ ମଧ୍ୟରେ ସ୍ୱର୍ଗୀୟ ଦେଶସେବୀ ପଣ୍ଡିତ ଗୋବିନ୍ଦ ରଥ ଅନ୍ୟତମ ।

ଓଡ଼ିଶାରେ ଇଂରେଜ ରାଜତ୍ୱ ସୁପ୍ରତିଷ୍ଠିତ ହେଲାବେଳକୁ ବାଙ୍କୀ ଗୋଟିଏ ଗଡ଼ଜାତରାଜ୍ୟ ଥିଲା । ବାଙ୍କୀର ତଦାନୀନ୍ତନ ରାଜା ଜଗନ୍ନାଥ ହରିଚନ୍ଦନ ମହାପାତ୍ର ନରହତ୍ୟା ଅପରାଧରେ ଯାବଜ୍ଜୀବନ ଦ୍ୱୀପାନ୍ତର ଦଣ୍ଡରେ ଦଣ୍ଡିତ ହେଲେ । ସେହି ସମୟରୁ ବାଙ୍କୀ କଟକ ଜିଲ୍ଲା ସହିତ ମିଶି ୧୮୪୦ ଖ୍ରୀଷ୍ଟାବ୍ଦରେ ଇଂରାଜ ସରକାରର ପ୍ରତ୍ୟକ୍ଷ ଶାସନକୁ ଆସିଲା ।

ବାଙ୍କୀ ଖାସ୍ ହେବାର ଅଠବର୍ଷ ପରେ ଅର୍ଥାତ୍ ୧୮୪୮ ମସିହା କାର୍ତ୍ତିକ ଶୁକ୍ଳପକ୍ଷ ନାଗଚତୁର୍ଥୀ ଦିନ ବାଙ୍କୀର ପାଟପୁର ଗ୍ରାମରେ କୁଳୀନ ବ୍ରାହ୍ମଣ ପରିବାରରେ ପଣ୍ଡିତ ଗୋବିନ୍ଦ ରଥ ଭୂମିଷ୍ଠ ହୋଇଥିଲେ । ଏହାଙ୍କ ପୂର୍ବପୁରୁଷ ବଳଭଦ୍ର ରଥଙ୍କ ଜନ୍ମଭୂମି ଗଞ୍ଜାମ ଜିଲ୍ଲାଅନ୍ତର୍ଗତ ମଧୁସୂଦନପୁର । ବଳଭଦ୍ର ରଥେ କୁଳୀନ ଭଟ୍ଟମିଶ୍ର ଶ୍ରେଣୀର ଅନ୍ତର୍ଗତ । ସେ ସ୍ୱକୀୟ ଯୋଗ୍ୟତା ବଳରୁ ଓ କୁଳୀନତା ଦୃଷ୍ଟିରୁ ବାଙ୍କୀ ରାଜସଭାରେ ସମାଦୃତ-ହେଲେ । ବଳଭଦ୍ର ରଥଙ୍କ ପୁତ୍ର ଅପର୍ତ୍ତି ରଥ ଗୋବିନ୍ଦଙ୍କ ପିତାମହ ଥିଲେ । ଦୀନବନ୍ଧୁ, ବାଜ୍ବବନ୍ଧୁ ଓ କୃପାସିନ୍ଧୁ ନାମରେ ଅପର୍ତ୍ତି ରଥଙ୍କର ତିନୋଟି ପୁତ୍ର ଥିଲେ । ଗୋବିନ୍ଦଙ୍କ ପିତା ଦୀନବନ୍ଧୁ ରଥ ଅକାଳରେ କାଳଗ୍ରାସରେ ପତିତ ହେବାରୁ ଗୋବିନ୍ଦ ଓ ତହାଙ୍କ ସହୋଦର ରାମଚନ୍ଦ୍ରଙ୍କ ଲାଳନପାଳନ-ଭାର ପିତାମହ ଅପର୍ତ୍ତି ରଥ ଓ ବିଧବା ମାତାଙ୍କ ଉପରେ ପଡ଼ିଥିଲା ।

## —ଶିକ୍ଷାଲାଭ—

ପିତୃ ବିୟୋଗାନ୍ତେ ବାଳକ ଗୋବିନ୍ଦ ପିତାମହଙ୍କ ଯତ୍ନରେ ଗ୍ରାମ-ପାଠଶାଳାରେ ଅଧ୍ୟୟନ କରିବାରେ ଲାଗିଲେ । ତାପରେ ପଣ୍ଡିତ ଅପର୍ତ୍ତି ରଥ ଛତାବର ଗ୍ରାମରେ କିଛିକାଳ ଅବସ୍ଥାନ କରିବାରୁ ବାଳକ ଗୋବିନ୍ଦ ସେହି ଗ୍ରାମର ପାଠଶାଳାରେ ପଢ଼ିବା ପାଇଁ ପିତାମହଙ୍କ ସଙ୍ଗେ ଛତାବର ଗ୍ରାମକୁ ଗଲେ । ତୀକ୍ଷ୍ଣ ମେଧା ବଳରେ ଅଳ୍ପସମୟ ମଧ୍ୟରେ ଗୋବିନ୍ଦ ପାଠଶାଳାର ସମସ୍ତ ପାଠ୍ୟ ବିଷୟ ଅଭ୍ୟସ୍ତ କରି ପାରିଥିଲେ । ଏହିପରି ଭାବରେ କିଛି କାଳ ଅଧ୍ୟୟନ କରି ଛତାବର ଗ୍ରାମରେ ଅବସ୍ଥାନ କଲାପରେ, ପିତାମହ ପଣ୍ଡିତ ଅପର୍ତ୍ତି ରଥ ସ୍ୱର୍ଗଧାମର ଯାତ୍ରୀ ହେଲେ । ପିତାମହଙ୍କ ବିରହରେ ଗୋବିନ୍ଦ ଅଧୀର ହୋଇ ନିଜକୁ ଅସହାୟ ମନେ କଲେ ।

ତାପରେ ତାହାଙ୍କ କନିଷ୍ଠ ପିତୃବ୍ୟ ପଣ୍ଡିତ କୃପାସିନ୍ଧୁ ଗୋବିନ୍ଦ ଓ ରାମଚନ୍ଦ୍ରଙ୍କୁ ସଂସ୍କୃତ ବ୍ୟାକରଣ ଓ ସାହିତ୍ୟ ପଢ଼ାଇବାରେ ଲାଗିଲେ । ଏହି ସମୟରେ ଚର୍ଚ୍ଚିକା ମାଇନର ସ୍କୁଲର ତଦାନୀନ୍ତନ ପ୍ରଧାନ ଶିକ୍ଷକ ଘୋରଗୋପାଳ ଭଟ୍ଟାଚାର୍ଯ୍ୟ ଘଟଣା-କ୍ରମେ କିଶୋର ଗୋବିନ୍ଦଙ୍କ ପ୍ରତିଭାର ପରିଚୟ ପାଇ, ତାହାଙ୍କୁ ସ୍କଲରସିପ ପାଇବାକୁ ଆଗ୍ରହ ପ୍ରକାଶ କଲେ ।

ସେ ସମୟରେ ଇଂରାଜୀ ଶିକ୍ଷା ପ୍ରତି ଜନସାଧାରଣ, ବିଶେଷତଃ ରକ୍ଷଣଶୀଳ ଶାସନୀ-ବ୍ରାହ୍ମଣ-ଗୋଷ୍ଠୀ ବୀତଶ୍ରଦ୍ଧ ଥିବା ବିଷୟ, ସମସ୍ତେ ଜାଣନ୍ତି । ଇଂରାଜୀ ଶିକ୍ଷା ଫଳରେ ବ୍ରହ୍ମତ୍ୱ ଲୋପ ପାଇବା ସଙ୍ଗେ ସଙ୍ଗେ ବିଧର୍ମୀ ହୋଇଯିବା ଭୟ ସେ ସମୟରେ ଲୋକଙ୍କୁ ଆତଙ୍କିତ କରି ରଖିଥିଲା । କଳ-ତିଆରି କାଗଜରେ ଲେଖିବାକୁ ମଧ୍ୟ ଲୋକେ ଘୃଣା ବୋଧ କରୁଥିଲେ । ତାଳପତ୍ର

ଓ ଲେଖନ ସାହାଯ୍ୟରେ ସମସ୍ତ ଲେଖା କାର୍ଯ୍ୟ ସାଧିତ ହେଉଥିଲା । ତେଣୁ ଇଂରାଜୀ ଶିକ୍ଷା କରିବା ତ ଦୂରର କଥା, ଲୋକେ ନିଜର ପିଲାପିଲାଙ୍କୁ ଇଂରାଜୀସ୍କୁଲର ସୀମା ସ୍ପର୍ଶ କରିବାକୁ ମହାପାପ ବୋଲି ମନେ କରୁଥିଲେ । କିନ୍ତୁ ସ୍ୱାଧୀନଚେତା ଗୋବିନ୍ଦ ଏସବୁ କୁସଂସ୍କାର ଭିତରୁ ବାହାରକୁ ଆସିବାପାଇଁ ଦୃଢ଼ସଂକଳ୍ପ ହେଲେ । ସେ ନିଜର ସହାଧ୍ୟାୟୀ ଓ ସହଚରମାନଙ୍କ ପ୍ରବର୍ତ୍ତାରେ ମାଇନର୍ ସ୍କୁଲରେ ନାମ ଲେଖାଇ ଅଧ୍ୟୟନ କରିବାରେ ଲାଗିଲେ । ଏପରି ଏକ ଘଟଣା ବର୍ତ୍ତମାନ ସମୟରେ ନଗଣ୍ୟ ହେଲେ ମଧ୍ୟ ତତ୍କାଳୀନ ସମାଜରେ ଏକ ବିପ୍ଳବ ଭଳି ବୋଧ ହୋଇଥିଲା ଏବଂ ଏଥିପାଇଁ ଗୋବିନ୍ଦଙ୍କୁ ବହୁ ଲାଞ୍ଛନା ସହ୍ୟ କରିବାକୁ ପଡ଼ିଥିଲା ।

ଚଉଁଡାରେ ପଢ଼ିବା ସମୟରେ ଶ୍ରେଣୀ ମଧ୍ୟରେ ପ୍ରଥମସ୍ଥାନ ଅଧିକାର କରିବା, ଗୋବିନ୍ଦଙ୍କ ପକ୍ଷରେ ସହଜସାଧ୍ୟ ଥିଲା । ଭୂଗୋଳଶିକ୍ଷାପାଇଁ 'ମାନଚିତ୍ର' ଅଭାବରୁ ଘରକାନ୍ଥରେ 'ମାନଚିତ୍ର' ଅଙ୍କନକରି ସେ ଭୂଗୋଳ ଶିକ୍ଷା କରୁଥିଲେ । ବୁଦ୍ଧିମାନ୍ ଗୋବିନ୍ଦ ନାନା କୌଶଳରେ ଲୋକଙ୍କ ଭିତରେ କଣ୍ଠସ୍ୱର ଅଣିବାରୁ ଲୋକେ କଟେମ କାଗଜରେ ଲେଖିବାକୁ ଆରମ୍ଭ କଲେ । ଏହି ବିଦ୍ୟାଳୟରୁ ସେ କୃତିତ୍ୱର ସହିତ ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇଥିଲେ ।

୧୮୬୯ ମସିହାରେ ନବ ପ୍ରତିଷ୍ଠିତ ନର୍ମାଲ୍ ସ୍କୁଲରେ ମାସିକ ବୃତ୍ତି ଦେବାର ବ୍ୟବସ୍ଥା ହେବାରୁ, ସେହି ଆକର୍ଷଣରେ ଯୁବକ ଗୋବିନ୍ଦ ଅଧ୍ୟୟନ ଉଦ୍ଦେଶ୍ୟରେ କଟକ ଆସିଲେ । ଏହି ବିଦ୍ୟାଳୟରେ ସେ ତିନିବର୍ଷ ଅଧ୍ୟୟନ କରିଥିଲେ । ରଥେ, ଏହି

ବିଦ୍ୟାଳୟର ସର୍ବ ପ୍ରଥମ ପରୀକ୍ଷୋତ୍ତୀର୍ଣ୍ଣ ଛାତ୍ର । ଖଣ୍ଡପଡ଼ାର ସୁଯୋଗ୍ୟ ସନ୍ତାନ ପଞ୍ଜିକାକାର ପଣ୍ଡିତ ରାଜବଲ୍ଲଭ ମିଶ୍ର ତାହାଙ୍କର ଏକମାତ୍ର ସହାଧ୍ୟାୟୀ ଥିଲେ ।

ଏହା ପରେ ଗୋବିନ୍ଦ ପଣ୍ଡିତ ବିଭାଗ (ଅଧୁନାତନ ଟ୍ରେନିଂ-ସ୍କୁଲ)ରୁ ଉତ୍ତୀର୍ଣ୍ଣ ହୋଇ, ପୁରୀରେ ମାସିକ ବାରଟଙ୍କା ବେତନରେ ଶିକ୍ଷକତା ଆରମ୍ଭ କଲେ । ସେ ସମୟରେ ଶିକ୍ଷା ବିଭାଗୀୟ କର୍ତ୍ତୃପକ୍ଷ ପୁରୀରେ ନୈଶବିଦ୍ୟାଳୟ ସ୍ଥାପନକରି, ଶ୍ରମଜୀବୀମାନଙ୍କୁ ଶିକ୍ଷା ଦେବାର ବ୍ୟବସ୍ଥା କରିବାରୁ ଗୋବିନ୍ଦ ନୈଶ ବିଦ୍ୟାଳୟରେ ମଧ୍ୟ ମାସିକ ଦୁଇଟଙ୍କା ବେତନରେ କାର୍ଯ୍ୟ ଆରମ୍ଭ କଲେ । ଏହି ଅବସରରେ କେତେକ ରକ୍ଷଣଶୀଳ ବ୍ୟକ୍ତି ବିପ୍ଳବୀ ଗୋବିନ୍ଦଙ୍କୁ ଅପମାନିତ କରିବା ନିମନ୍ତେ ସଚେଷ୍ଟ ହେଲେ । ଫଳରେ ରଥଙ୍କ ବିରୋଧରେ ନାନାକଥା କର୍ତ୍ତୃପକ୍ଷଙ୍କ କର୍ଣ୍ଣଗୋଚର କରାଇ ସେମାନେ କର୍ତ୍ତୃପକ୍ଷଙ୍କୁ ସ୍ପଷ୍ଟବୁଝାଇ ଦେଲେ ଯେ ରଥେ ବିଦ୍ୟାଳୟରେ ନିୟମିତ ରୂପେ କାର୍ଯ୍ୟ ନ କରି, ଟଙ୍କା ଠକି ନେଉଛନ୍ତି । ଘଟଣାର ସତ୍ୟତା ବୁଝିବାପାଇଁ ଶିକ୍ଷା ବିଭାଗୀୟ ପରିଦର୍ଶକ ମହାଶୟ ଗୋପନରେ ବିଦ୍ୟାଳୟକୁ ଯାଇ ଗୋବିନ୍ଦଙ୍କୁ କର୍ତ୍ତବ୍ୟ କର୍ମରେ ବ୍ୟାପୃତ ଥିବାର ଦେଖିଥିଲେ । ତେଣୁ ରଥଙ୍କ ପ୍ରତି ତାଙ୍କର ଯେଉଁ ଅମୂଳକ ଧାରଣା ହୋଇଥିଲା, ତାହା ଦୂର ହେଲା । ଏହିପରି ଭାବରେ ଶତ୍ରୁ-ପକ୍ଷର ଚକ୍ରାନ୍ତ ବ୍ୟର୍ଥ ହେଲା ।

ପୁରୀରେ ଶିକ୍ଷକତା କରୁଥିବା ସମୟରେ ମାସିକ କୋଡ଼ିଏ ଟଙ୍କା ବେତନରେ କଟକରେ ଗୋଟିଏ କିରାନି ପଦ ଶୂନ୍ୟ ହେବାରୁ ରଥଙ୍କୁ ଡାକରା ଆସିଲା । ନିଯୁକ୍ତି ସମୟରେ ଉପରିତନ ହାକିମ ତାଙ୍କର ସ୍ୱାଧୀନ ଭାବର ପରିଚୟ ପାଇ କହିଥିଲେ—"ଆପଣଙ୍କ

ତଳି ସ୍ୱାଧୀନଚେତା ଲୋକର ଏପରି କ୍ଷୁଦ୍ର କର୍ମର ପରିସର ଭିତରେ ଅବଦ୍ଧ ହୋଇ, ଆପଣାର ମୂଲ୍ୟବାନ୍ ଜୀବନକୁ ସଂକୀର୍ଣ୍ଣ ଭାବରେ ଗ୍ରଥିତ କରିବା, ମତେ ଭଲ ବୋଧ ହେଉନାହିଁ।" ରଥ ତାଙ୍କର ଉପଦେଶକୁ ଶିରୋଧାର୍ଯ୍ୟ କରି, ଏ ବନ୍ଧନରୁ ନିଜକୁ ଏକାବେଳକେ ଫେରାଇ ଆଣିଥିଲେ।

## —ସାହିତ୍ୟ ଚର୍ଚ୍ଚା—

ଏହି ସମୟରେ ଓଡ଼ିଆ ଭାଷାରେ ଉପଯୁକ୍ତ ପାଠ୍ୟ ପୁସ୍ତକ ପ୍ରାୟ ନଥିଲା କହିଲେ ଅତ୍ୟୁକ୍ତି ହେବନାହିଁ। ଏ ଅଭାବ ଦୂରକରି ଶିକ୍ଷାର ସହଜ ପ୍ରସାରରେ ସାହାଯ୍ୟ କରିବା ନିମନ୍ତେ ପଣ୍ଡିତ ଗୋବିନ୍ଦ ପୁସ୍ତକ ରଚନାରେ ମନ ବଳାଇଥିଲେ। ଏହିରୂପେ ପଣ୍ଡିତ ଗୋବିନ୍ଦ 'ବର୍ଣ୍ଣବୋଧକ' ଠାରୁ ଆରମ୍ଭ କରି 'କବିତାକଳାପ' ପର୍ଯ୍ୟନ୍ତ ଭାଷା ଶିକ୍ଷାର ନାନା ପୁସ୍ତକ ତଥା ଭିନ୍ନ ପାଠ୍ୟ ବିଷୟରେ ମଧ୍ୟ ଅନେକ ପାଠ୍ୟ ପୁସ୍ତକ ରଚନା କରିଥିଲେ। ସେ ଅର୍ଥ ସଂଗ୍ରହ ପୂର୍ବକ ସେଗୁଡ଼ିକ ପ୍ରକାଶ କରାଇ, ବିକ୍ରୟଲବ୍ଧ ଧନରେ ସ୍ୱତନ୍ତ୍ର ପୁସ୍ତକ ପ୍ରକାଶ ବ୍ୟବସାୟ ଆରମ୍ଭ କରିଥିଲେ। କର୍ମୀ ଶୌରୀଶଙ୍କର ସହାୟ ଥିବାରୁ ଏ ବ୍ୟବସାୟରେ ସେ ଅଳ୍ପ ସମୟରେ ଅଶାତୀତ ଉନ୍ନତି କରିପାରିଥିଲେ ଏବଂ ନିଜ ଜୀବଦ୍ଦଶାରେ ଶତାଧିକ ପୁସ୍ତକ ପ୍ରକାଶ କରି ବର୍ଷରେ ସହସ୍ର ସହସ୍ର ଟଙ୍କା ଉପାର୍ଜନ କରିବାରେ ସମର୍ଥ ହୋଇଥିଲେ। କେତେକ ପୁସ୍ତକ ରଚନାରେ ଗୋବିନ୍ଦ ସରକାରଙ୍କ ଦ୍ୱାରା ପୁରସ୍କୃତ ମଧ୍ୟ ହୋଇଥିଲେ। ପଣ୍ଡିତ ଗୋବିନ୍ଦଙ୍କର ବହୁଳ ପୁସ୍ତକ ପ୍ରକାଶକୁ ଲକ୍ଷ୍ୟକରି ବ୍ୟାସକବି ଫକୀରମୋହନ ସ୍ୱରଚିତ 'ଉତ୍କଳ ଭ୍ରମଣ' ପୁସ୍ତକରେ ଲେଖିଛନ୍ତି—

"ଜଳ୍ପ ଏଥେ କଣ୍ଠଛନ୍ଦ ବ୍ରାହ୍ମଣ ପଣିଆ,
ପୁସ୍ତକ ଛପାଇ ଦେଇ ଅଶେ-ଦଅଣିଆ ।"

ପଣ୍ଡିତ ଗୋବିନ୍ଦଙ୍କ ତୁଲ୍ୟ ପୁସ୍ତକବ୍ୟବସାୟୀ ସେ ସମୟରେ ଅନ୍ୟକେହି ନଥିଲେହେଁ, ସରକାରୀ ପୁରସ୍କାର ଲାଭ ଆଶାରେ ଅନେକ ଲେଖକ ପ୍ରକାଶକ ଓ ପ୍ରତିଯୋଗୀ ହୋଇ ପାଠ୍ୟ ପୁସ୍ତକ ରଚନା ଓ ପ୍ରକାଶ କରୁଥିଲେ ।

ଏହି ସମୟରେ ଗ୍ରନ୍ଥକର୍ତ୍ତା ପରୀକ୍ଷାପାଇଁ ପଣ୍ଡିତ ଗୋବିନ୍ଦରଥଙ୍କ 'କବିତା କଳାପ' ପଦ୍ୟ ସାହିତ୍ୟରୂପେ ନିର୍ବାଚିତ ହୋଇଥିଲା । ପଣ୍ଡିତଙ୍କ ସ୍ୱରଚିତ ପୁସ୍ତକାବଳି ମଧ୍ୟରେ 'କବିତା କଳାପ' (୧ମ ଓ ୨ୟ ଭାଗ) ସର୍ବୋତ୍କୃଷ୍ଟ । ଏଥେ କିପରି ସରଳଭାଷାରେ ଲେଖିପାରୁଥିଲେ, ତାହା ପାଠକମାନଙ୍କ ଅବଗତ ନିମନ୍ତେ ସେଥିରୁ କତିପୟ ପଂକ୍ତି ତଳେ ଦିଆଗଲା ।

## ଇନ୍ଦୁମତୀ ସ୍ୱୟମ୍ବର—

ବାଜିଲା ଶୁଭ ସୂଚକ ବାଦନ
କମ୍ପିଲା ଶବଦେ ବିଶ୍ୱଭୁବନ
ଜଗତମୋହିନୀ ଭୋଜଙ୍କ ଭଗିନୀ
ହେଲେ ନାନାଅଳଙ୍କାରେ ମଣ୍ଡନ ।
ସଙ୍ଗରେ ସୁନନ୍ଦା ତାଙ୍କ ସେବିକା
ସଭା ମଣ୍ଡପକୁ କଲା ଗମନ ।
ଅନୁପମ ରୂପ ଲାବଣ୍ୟବତୀ
ଦେଖି ସେ ବାଳାକୁ ସବୁ ନୃପତି
ନିମେଷ ଶୂନ୍ୟରେ ଏକନୟନରେ

ଗୃହିଁଲେ ହୋଇଛ ଚଞ୍ଚଳମତି
କେବଳ ଯାଏନେ ଶସ୍ତ୍ରବର୍ଜିତ
ମନକେନ କଲେ ତହିଁ ବସନ୍ତ ।

× × × ×

ପ୍ରିୟତମ ସଙ୍ଗେ ସୁଖେ ବିହର
ଯୌବନଶ୍ରୀସ୍ୱଚ୍ଛ କୃତାର୍ଥ କର,
ଯେତେକେ କୁମୁଦିନୀ ଦେଖି ଦିନମଣି
ଅନୁରକ୍ତା ନୋହୁ ହୁଏ ଅନ୍ତର,
ତେତେକେ ଧନୀ ଦେଖି ସେ ନୃପବର
ଅନୁରକ୍ତା ନୋହୁ ହେଲେ ଅନ୍ତର ।

**ଅଜ ବିଳାପ—**

"ମନୁଷ୍ୟର କଥା କିବା କୁହାଯାଏ ନାହିଁ,
ଅତଏବ ଉତ୍ତପ୍ତହେଲେ ଲୌହ ଯାଏ ବହି ।
ସେହି ପୁଷ୍ପମାଳା ପତି କର ନେତ୍ରପାତ,
କହିଲେ କରୁଣସ୍ୱରେ ନୃପତି ଏମନ୍ତ—
"ଅହୋ ଏ କୁସୁମ ମାଳା ଗାତ୍ରସ୍ପର୍ଶ କରି
ଯେବେ ଜୀବନର ସଙ୍ଗୀ ନେଲା ପ୍ରାଣେଶ୍ୱରୀ,
ତେବେ ଜୀବନ ବିନାଶି ସୃଷ୍ଟି-କରତାର
କେଉଁ ଦ୍ରବ୍ୟ ନକରଇ ପ୍ରାଣ ଅପହାର ।
ସଂହାରକ କୃତାନ୍ତ ବା ଏମନ୍ତ କରନ୍ତି,
କୋମଳ ଦ୍ରବ୍ୟେ କୋମଳ ଦ୍ରବ୍ୟକୁ ନାଶନ୍ତି ।"

ରଥେ କିଭଳି ସ୍ୱାଧୀନଚେତା ପୁରୁଷଥିଲେ, ତାହା ତାଙ୍କ ଲିଖିତ 'ଫିଙ୍ଗର ସାହେବ' ପଢ଼ିଲେ ସ୍ପଷ୍ଟ ଜଣା ପଡ଼େ । ସେ

ଅଭିମାନୀ ସ୍ୱେଚ୍ଛାଚାରୀ ରାଜକର୍ମଚାରୀମାନଙ୍କ ଚରିତ୍ରକୁ ସେ ସମୟରେ ଯେପରି ନିର୍ଭୀକ ଭାବରେ ତୀବ୍ର ସମାଲୋଚନା କରୁଥିଲେ, ତାହା ଇଂରେଜୀ ଶାସନାଧୀନରେ ଅନନ୍ୟସାଧାରଣ ଥିଲା । ସେ 'ଫିରିଙ୍ଗ ସାହେବ' ରେ ଲେଖିଚନ୍ତି—

"ଏଥର ମଲେ ସାହେବ ହେବି
କଲ୍‌ମୁଣ୍ଡରେ କ୍ୟାପ୍ ଦେବି,
ଜିଙ୍କେଟ୍ ଫ୍ଲାନେଲ୍ ପ୍ୟାଣ୍ଟାଲୁନ୍ କରି
ନାଇଟ୍ କେପ ପିନ୍ଧୁଥିବି ।
ଗିନ ଫାଉଲ୍‌ଙ୍କ ବଂଶ ମାରିବି
ଟେବୁଲ୍ ଉପରେ ଖାନା ଖାଇବି,
ନେଟିଭ୍ ଦେଖିଲେ ନିକଟେ ଆସିଲେ
କାଳୀ ବୋଲି ଦୂର୍‌ଦୂର୍ କରିବି ।"

× × × ×

ଇଙ୍ଗ୍ରେଜିସ୍ଥାନ୍ ଯେବେ ଦେଖିବି
କିଛି ଖଣ୍ଡି ମଜୁରି କରି ମାରିବି,
'ଗୁଡ୍‌ବାଇ ଫ୍ରେଣ୍ଡ୍' ବୋଲିଣ ସେକ୍‌ହ୍ୟାଣ୍ଡ୍
କରି 'ଲେଟ୍‌ମି ଗୋ' ବୋଲି ଚଳିବି ।
ମୁରଲୀ ମୁଖରେ ସ୍ମୋକ୍ ଗ୍ଲାସରି
ଫିର୍‌ବାଣ୍ଡ ଖଣ୍ଡି କାଖେ ଯାକିବି,
ବ୍ରାଇଟ୍ ହେଣ୍ଡ୍‌କୁ ପକେଟେ ପୂରାଇ
ହୁଇଟିନ୍ ସୁଧା ଶପ୍‌କୁ ଯିବି ।
ଶପ୍‌କୁ ରିଟର୍ଣ୍ଣ୍ କରିବା ବେଳେ
ଅଲ୍‌ଡ ପିପଲ୍ ଦେଖିବେ ଭୋଳେ

ଚାଲ ଚାଲ ଦେବ ଅବତାର ମୂର୍ତ୍ତି
ଯାଜପୁରେ ଅଛି ଆନନ୍ଦ ଖେତ୍ରେ ।

× × × ×

କାମ୍ବ୍ରିଜ୍ କଲେଜରେ ଛାତ୍ର ପଢ଼ିବ
ରେନ୍ସାରେ ପିଭିଲ୍ପ୍ଲାନ୍ ହେବ,
କେବଳ ଭାରତ ଅଲ୍ ମାଁର୍ ହୋପ୍
ଏଠାରେ ହାକର୍ମ ଅପି ଲଭିବ ।
ଟ୍ରେନ୍ ଓ' ଜ୍ଞ୍ଜରେ ଜୋର୍ ଚଢ଼ିବ
ଧପ୍କର୍ ଭୋଟେ ଅପି ମିଳିବ.
ଛାଗଗଣ ମଧ୍ୟେ ଗନ୍ତ ପେଞ୍ଜି ପ୍ରାପ୍ତେ
ଅମଲ୍ଙ୍କ ମଧ୍ୟେ ପଞ୍ଚମ ନେବ ।

ଏପରି ବ୍ୟଙ୍ଗୋକ୍ତିପୂର୍ଣ୍ଣ ହାସ୍ୟରସ କବିତା ସେ ସମୟରେ ଖୁବ୍ କ୍ବଚିତ୍ ଦେଖାଯାଏ ।

ପଣ୍ଡିତ ରଥେ ଏହା ଛଡ଼ା ଗଦ୍ୟ ସାହିତ୍ୟ, ବ୍ୟାକରଣ, ଇତିହାସ ଓ ଭୂଗୋଳ ପ୍ରଭୃତି ପାଠ୍ୟ ବିଷୟରେ କେତେକ ପୁସ୍ତକ ପ୍ରଣୟନ କରିଥିଲେ ମଧ୍ୟ ଉପରୋକ୍ତ ନାନାକାରଣରୁ ଶିକ୍ଷାବିଭାଗ ସେଗୁଡ଼ିକୁ ଉପେକ୍ଷାକରି ଅନ୍ୟାନ୍ୟ ଲେଖକଙ୍କର ପାଠ୍ୟପୁସ୍ତକମାନ ନିର୍ବାଚନ କରୁଥିଲେ । ଫଳରେ କେତେକ ତୋଷାମୋଦକାରୀ ଲେଖକ ତଥା ସ୍କୁଲଫାଇନାଲ ପରୀକ୍ଷାରେ ପରୀକ୍ଷକ ରୂପେ ଶିକ୍ଷା ବିଭାଗୀୟ କର୍ମଚାରୀମାନେ ନିର୍ବାଚିତ ହେଉଥିବାରୁ, ସେମାନଙ୍କର ପ୍ରଣୀତ ପୁସ୍ତକ ପ୍ରଚାର ହେବା ପାଇଁ, ସେମାନଙ୍କୁ ବିଶେଷସୁଯୋଗ ଓ ସୁବିଧା ମିଳିଲା । ଏଥିରେ, ନିରପେକ୍ଷ ବିଚାରର ସ୍ଥାନ ନଦେଖି, ସଂପାଦକ ଗୌରୀଶଙ୍କର 'ଉତ୍କଳ ଦୀପିକା'ରେ ପାଠ୍ୟପୁସ୍ତକ

ନିର୍ବାଚନ ବିଷୟରେ ତୁମୁଳ ଓ ତୀବ୍ର ଆନ୍ଦୋଳନ ଆରମ୍ଭ କରିଦେଲେ । ଜନସେବୀ ଗୋବିନ୍ଦ ଆଜୀବନ ଗୌରୀଶଙ୍କରଙ୍କ ସହକର୍ମୀ, ପୁସ୍ତକ ରଚନା ଓ ପ୍ରକାଶରେ ତାହାଙ୍କର ଦକ୍ଷିଣ-ହସ୍ତ ସ୍ୱରୂପ ଥିଲେ । ଏହି ଆନ୍ଦୋଳନରେ ରଥେ ଯୋଗଦେଇ ସମାଲୋଚନାମୂଳକ ବଳିଷ୍ଠ ସନ୍ଦର୍ଭମାନ 'ଦୀପିକା'ରେ ପ୍ରକାଶ କଲେ । ଏହି ଆନ୍ଦୋଳନ ପାଞ୍ଚ ବର୍ଷକାଳ ବ୍ୟାପିଥିଲା ।

ରଥ 'ଦୀପିକା'ରେ ବିବିଧ ରାଜନୈତିକ ଓ ସାହିତ୍ୟିକ ସମାଲୋଚନାମୂଳକ ବଳିଷ୍ଠ ପ୍ରବନ୍ଧମାନ ନିର୍ଭୀକ ଭାବରେ ଲେଖୁଥିଲେ । ସେ ସାଧାରଣରେ ନିଜକୁ ପ୍ରବନ୍ଧଲେଖକ ବୋଲି ପରିଚୟ ନଦେଇ 'ଗୋପ' ବୋଲି ବେନାମି ସ୍ୱାକ୍ଷର କରୁଥିଲେ । ସେ ସମୟରେ ଦେବାନ୍ ବାହାଦୁର ଶ୍ରୀ ଶ୍ରୀକୃଷ୍ଣ ମହାପାତ୍ର 'ସନ୍ଧାଣି' ବେନାମଧାରୀ ଲେଖକ ବୋଲି ସାଧାରଣରେ ପରିଚିତ ଥିଲେ । ଏ ଦୁହେଁ 'ଦୀପିକା'ର ଧୁରନ୍ଧର ଲେଖକ ଥିଲେ ।

## — ଦେଶସେବା —

ସାଧାରଣ ଜନ-ହିତକର କାର୍ଯ୍ୟରେ ପଣ୍ଡିତଙ୍କର ଅନୁରାଗ ଓ ଉତ୍ସାହ ଯଥେଷ୍ଟ ଥିଲା । ସ୍ୱର୍ଗୀୟ ପୁଣ୍ୟଶ୍ଳୋକ ପ୍ୟାରୀମୋହନଙ୍କ ସହିତ ପଣ୍ଡିତ ରଥେ ମିଶି 'ଉତ୍କଳପୁତ୍ର' ନାମକ ପାକ୍ଷିକ ସଂବାଦପତ୍ର ସମ୍ପାଦନ କରୁଥିଲେ ଓ କଟକ ପି. ଏମ୍. ଏକାଡ଼େମୀର ପ୍ରତିଷ୍ଠାରେ ପ୍ରଧାନ ସହାୟକ ଓ କର୍ମୀ ଥିଲେ । ଏହି ବିଦ୍ୟାଳୟରେ ସେ ଅବୈତନିକ ଶିକ୍ଷକ ରୂପେ ପ୍ରତିଷ୍ଠାତାଙ୍କ ସହିତ ବହୁକାଳ କାର୍ଯ୍ୟ କରି ସୁଖ୍ୟାତି ଓ ପ୍ରଶଂସା ପାଇଥିଲେ । ପ୍ୟାରୀମୋହନଙ୍କ ସହିତ ରଥଙ୍କର ଉପର ଘନିଷ୍ଠ ବନ୍ଧୁତା ଥିଲା ଓ ଉକ୍ତ ବିଦ୍ୟାଳୟରେ ପଣ୍ଡିତ ଗୋବିନ୍ଦ ଉପର ଗୋପବନ୍ଧୁଙ୍କ ଶିକ୍ଷକ ଥିଲେ, ତାହା ଶିକ୍ଷାପ୍ରାଣ ପ୍ୟାରୀ-

ମୋହନ, ରଥଙ୍କ ପାଖକୁ ଯେଉଁ ପତ୍ର ଦେଇଥିଲେ, ତହିଁରେ ତାହା ସ୍ପଷ୍ଟ । ସେହି ପତ୍ର ଖଣ୍ଡିକର ସଂକ୍ଷିପ୍ତ ନକଲ ତଳେ ଦିଆଗଲା ।

କଟକ
ତା ୧୦-୪-୧୮୭୯

ରଥେ, ନମସ୍କାର,

ଆମ୍ଭମାନଙ୍କର ସମସ୍ତ ମଙ୍ଗଳ । ତୁମ୍ଭର ଖଣ୍ଡିଏ ପତ୍ର ପାଇଅଛୁ ଓ ସେଥିରୁ ଯାହା ଜାଣିବାର ସମସ୍ତ ଜାଣିଅଛୁ । × × × ୬୦ ଛାତ୍ର ଭର୍ତ୍ତି ହେଲେଣି । ୩୧ ତାରିଖ ଦିନ ମ୍ୟାନଜିଂ-କମିଟିର ପ୍ରଥମ ଅଧିବେଶନ ହୋଇ ଯାଇଅଛି । × × × ଅଧୀନ ସଂପାଦକ ନିଯୁକ୍ତ ହୋଇଅଛି । ସ୍କୁଲଗୃହ ଶୀଘ୍ର ନିର୍ମିତ ହେବାର ସ୍ଥିର ହୋଇଅଛି । × × × ତୁମ୍ଭ ବଦଳରେ ଯେ ଅଛନ୍ତି, ସେ ବଡ଼ ଶାନ୍ତ ପ୍ରକୃତିର ଲୋକ । ତୁମ୍ଭ ସକାଶେ ଅଦ୍ୟାବଧି ପିଲାଙ୍କର ଦୁଃଖ ଯାଇ ନାହିଁ । କାଲି ତୁମ୍ଭେ ଆସିବ, ପରଦିନ ଆସିବ, ଏହି ପ୍ରକାରେ, ପିଲାଏ ତୁମ୍ଭ କଥା ମତେ ପଚାରିଲେ, ସେମାନଙ୍କୁ ମୁଁ ଭଣ୍ଡୁଅଛି । ଅଧିକ ବିଳମ୍ବ ନ କରିବ । ସପ୍ତାହ ମଧ୍ୟରେ ତୁମ୍ଭେ ଆସି, ଏଠାରେ ପହଞ୍ଚିବ । 'ପୁତ୍ର' ମୂଲ୍ୟ ସମସ୍ତଙ୍କଠାରୁ ଅଧିକତର ଜାଣିବ । × × × ତୁମ୍ଭକଥା ସବୁବେଳେ ଆମ୍ଭମାନଙ୍କର ମନରେ ପଡ଼ୁଥାଏ । × × × ଶୀଘ୍ର ଆସିବ ।

ଭବଦୀୟ ଏକାତ୍ମା
ଶ୍ରୀ ପ୍ୟାରୀମୋହନ ଆଚାର୍ଯ୍ୟ

ସ୍ପଷ୍ଟବାଦିତା, ନିର୍ଭୀକତା ଓ ତେଜସ୍ୱିତା ରଥଙ୍କ ଚରିତ୍ରର ବିଶେଷତ୍ୱ । କୌଣସି ପ୍ରକାର ଅନ୍ୟାୟ ଓ ଅତ୍ୟାଚାର ସେ ସହି

ପାରୁ ନ ଥିଲେ । ବାଙ୍କୀ ଖାସ୍ ହେବା ପରେ ଏହାର ଶାସନ-ଭାର ଜଣେ ତହସିଲଦାରଙ୍କ ଉପରେ ନ୍ୟସ୍ତ ହେଲା । ଏହି ତହସିଲଦାରମାନେ ଅଜ୍ଞ, ନିଃସହାୟ ପ୍ରଜାମାନଙ୍କର ସରଳତାର ସୁଯୋଗ ନେଇ ସେମାନଙ୍କ ଉପରେ ନାନା ପ୍ରକାର ଅତ୍ୟାଚାର ଆରମ୍ଭ କରିଦେଲେ । ଏମାନଙ୍କ ମନମୁଖୀ ଶାସନରେ ଜନ-ସାଧାରଣ ହାହା ହାହା ଡାକ ଦେଲେ । ଅନବରତ ବେଠି ଖଟି ଏବଂ ତଳ କର୍ମଚାରୀଙ୍କଠାରୁ ଆରମ୍ଭ କରି ଖୋଦ୍ ତହସିଲଦାରଙ୍କୁ ଲାଞ୍ଚ ଦେଇ ଲୋକେ ସର୍ବସ୍ୱାନ୍ତ ହେବାକୁ ଲାଗିଲେ । ସତ୍ୟ ଓ ନ୍ୟାୟ ବସ୍ତୁତଃ ଲୋପ ପାଇଥିଲା । ସେ ଅଞ୍ଚଳରେ ଯେଉଁ କେତେ ଜଣ ସାମାନ୍ୟ ଶିକ୍ଷିତବ୍ୟକ୍ତି ଥିଲେ ସେମାନେ ତହସିଲଦାରଙ୍କ ଅନୁଗ୍ରହ ଭାଜନ ହୋଇ ତାହାଙ୍କ ଅତ୍ୟାଚାରରେ ସହାୟକ ଓ ସମର୍ଥକ ହୋଇ ରହିଲେ ।

ଇତିହାସ ପ୍ରସିଦ୍ଧ ଗାନ୍ଧିଜୀ ଶୁଣ ଦେଉଳ ଲୀଳାଭୂମିରେ ଏ ରକ୍ତପିପାସୁମାନଙ୍କର ଏପରି ଅତ୍ୟାଚାର ଜନ୍ମି ପଣ୍ଡିତ ଗୋବର୍ଦ୍ଧନଙ୍କର ସହ୍ୟ ହେଲା ନାହିଁ, ସେ ଏହାର ପ୍ରତିରୋଧ କରିବା ପାଇଁ ବଦ୍ଧପରିକର ହୋଇ ଠିଆହେଲେ । ସେ ଜାଣିଥିଲେ, ଏ କାର୍ଯ୍ୟରେ ତାହାଙ୍କୁ ବହୁ ବିପଦର ସମ୍ମୁଖୀନ ହେବାକୁ ହେବ । ତଥାପି ସେ ପଶ୍ଚାତପଦ ନ ହୋଇ ସହକର୍ମୀ ଶ୍ରୀ ଗୌରୀଶଙ୍କର ଏବଂ ପ୍ୟାରୀମୋହନଙ୍କ ପରାମର୍ଶ ନେଇ ନିଜେ ବାଙ୍କୀ-ପ୍ରଜାଙ୍କର ଦୁର୍ଦ୍ଦଶାର କାରଣ ଅନୁସନ୍ଧାନ କରିବାକୁ ଲାଗିଲେ ।

ପଣ୍ଡିତ ଗୋବର୍ଦ୍ଧନ ପ୍ରାରମ୍ଭିକ ଅନୁସନ୍ଧାନରେ ଜଣାଗଲା ଯେ ତଦାନୀନ୍ତନ ତହସିଲଦାର ନିଜେ ଶ୍ରୀନାଥବାବୁ ନିଜେ ବହୁତର ଗ୍ରହଣ କରି ବହୁ ପ୍ରଜାଙ୍କୁ କ୍ଷତିଗ୍ରସ୍ତ କରି ଅଛନ୍ତି । ପୁଣି

ଗୋବିନ୍ଦ ନିର୍ଭୀକଭାବରେ ତାଙ୍କ ନାମରେ ଏକ ଉତ୍କୋଚ-ଗ୍ରହଣ ନାଲିସ୍ କଟକ ବସ୍ତୁବ୍ରଳପୁରରେ ଦାଏର କରିଦେଲେ । ଫଳରେ ବିଭାଗୀୟ ତଦନ୍ତ ଆରମ୍ଭ ହେଉ ହେଉ ସେ ଆତ୍ମହତ୍ୟା କରି ଏ ଅଭିଯୋଗରୁ ନିଜକୁ ରକ୍ଷା କଲେ ।

ଏହା ପରେ ଗୋବିନ୍ଦଙ୍କ ଆଖି ପଡ଼ିଲା ବଳରାମ ଓ ବାଳମୁକୁନ୍ଦ କାନୁନ୍‌ଗୋ ନାମକ ଅନ୍ୟ ଦୁଇ କର୍ମଚାରୀଙ୍କ ଉପରେ । କିନ୍ତୁ ଏ ଉଭୟଙ୍କ ଷଡ଼ଯନ୍ତ୍ର ଏପରି ତୀବ୍ର ହୋଇ ଉଠିଲା ଯେ ଫଳରେ ଗୋବିନ୍ଦଙ୍କୁହିଁ କାରାବରଣ କରିବାକୁ ହେଲା । କିନ୍ତୁ ସେ ଯୋଦ୍ଧା ସେ ଏଭଳି ସାମାନ୍ୟ ପ୍ରତିଘାତରେ ହତୋତ୍ସାହ ହୋଇ ପଡ଼େ ନାହିଁ । ନିଃସ୍ଵାର୍ଥପରଭାବରେ ଯେ ଜନସେବା କରିବାକୁ ଯାଏ, କାରାବାସ ତା ପକ୍ଷେ କଷ୍ଟଦାୟକ ନୁହେ, ତେଣୁ ଶେଷରେ ସେ ଜୟଶ୍ରୀ ମଣ୍ଡିତ ହୋଇ ସଫଳକାମ ହୋଇଥିଲେ । ଏହି ସମୟରେ ରଥଙ୍କ ସହୃଦୟ ବନ୍ଧୁ ଗୌରୀଶଙ୍କର ପୃଷ୍ଠପୋଷକ ହୋଇ ନଥିଲେ, ଅଭିଯୋକ୍ତାଙ୍କୁ ଯେ ଉଭୟଙ୍କର ବିପଦରେ ପଡ଼ିବାକୁ ହୋଇ ଥାଆନ୍ତା, ଏଥିରେ ସନ୍ଦେହର ଅବକାଶ ନଥିଲା । ସେ ସମୟରେ 'ଉତ୍କଳଦୀପିକା'ର ଅନେକ ସ୍ତମ୍ଭ ରଥଙ୍କ ମକଦ୍ଦମା ସମ୍ବାଦରେ ପୂର୍ଣ୍ଣ ହୋଇଥିଲା । ବିପଦବନ୍ଧୁ ପ୍ୟାରୀମୋହନ ଏହି ଅତ୍ୟାଚାର ବିରୋଧରେ ଦଣ୍ଡାୟମାନ ଅନ୍ତରଙ୍ଗ ବନ୍ଧୁ ରଥଙ୍କ ପକ୍ଷ ସମର୍ଥନ କରି, କିପରି ଉତ୍ସାହିତ କରୁଥିଲେ, ତାହା ତଳେ ଦିଆ-ଯାଉଥିବା ପତ୍ର ଖଣ୍ଡିକରୁ ପାଠକମାନେ ଅନୁମାନ କରି ପାରିବେ ।

ରଥେ,

ଯେଉଁ କାର୍ଯ୍ୟରେ ପ୍ରବୃତ୍ତ ହୋଇଅଛ, ସେଥିରେ ସାବଧାନପୂର୍ବକ କାର୍ଯ୍ୟ କରିବ । ସାକ୍ଷିମାନେ ଯେପରି ଯଥାର୍ଥ ବର୍ଣ୍ଣନା କରନ୍ତି, ସେଥିପ୍ରତି ଚେଷ୍ଟାର ତ୍ରୁଟି କରିବ ନାହିଁ ।

ସାକ୍ଷିମାନେ ସତ୍ୟ କହିବେ କି ନାହିଁ, ବଡ଼ ସନ୍ଦେହର ବିଷୟ । କମିସନର ସାହେବ ଯେ କଚ୍ଛିହାଳ ସବାଶେ ସ୍ଥାନାନ୍ତରିତ କରିବାକୁ ଅସ୍ବୀକୃତ ହୋଇଅଛନ୍ତି, ଏହା ଶୁଣି ମୁଁ କିଛିଏ ଶଙ୍କିତ ହୋଇଅଛି, ସାବଧାନ, ସାବଧାନ, 'ଯତୋଧର୍ମ ସ୍ତତୋଜୟଃ'. ଏହି କଥା ସ୍ଥିର ଜାଣି ଯଥାସାଧ୍ୟ ଚେଷ୍ଟାକର । ଭଗବାନ ଯାହା କରିବେ । ବଙ୍ଗୀୟ ଓ ଉତ୍କଳୀୟ ସମ୍ବାଦପତ୍ରମାନଙ୍କୁ ଏ ସମ୍ବାଦ ପଠାଅ । ମିରର୍ ଓ କଲିକତାର Statesman ଏହି ଦୁଇ-ପତ୍ରିକାକୁ ଟେଲିଗ୍ରାମ ଦ୍ୱାରା ସମ୍ବାଦ ଦିଅ ଯେ ଚାର୍ଜୀ ଡେପୁଟୀ ମେଜେଷ୍ଟ୍ରର ଏପରି ଅତ୍ୟାଚାର କରୁଥିବାର କେତେକ ଦାକ୍ଷୀ-ବାସିମାନେ କମିଶନର ସାହେବଙ୍କଠାରେ ଦରଖାସ୍ତ କରିଅଛନ୍ତି । ଦରଖାସ୍ତକାରମାନେ ସ୍ଥାନାନ୍ତରିତ କରି ମକଦ୍ଦମା ବିଚାର କରିବାକୁ ପ୍ରାର୍ଥନା କରନ୍ତି । ମାତ୍ର କମିସନର ତାହା ନକରି ସୁହାତଲବ କରିଅଛନ୍ତି । ଇତ୍ୟାଦି ।

ତା ୨୦।୮।୧୮୮୦ } ତୁମ୍ଭର
ପ୍ୟାରୀମୋହନ

ରଥଙ୍କ ସହିତ ପ୍ୟାରୀମୋହନଙ୍କ ଘନିଷ୍ଠତାହେତୁ ତୁଷ୍ଟିରୁ ପ୍ୟାରୀମୋହନଙ୍କ ଜୀବନର କିଛିଏ ସଂକ୍ଷିପ୍ତ ପରିଚୟ ଏଠାରେ ଦିଅଗଲେ, ବୋଧହୁଏ ଅପ୍ରାସଙ୍ଗିକ ହେବ ନାହିଁ ।

୧୮୭୯ ଖ୍ରୀଷ୍ଟାବ୍ଦରେ ପ୍ୟାରୀମୋହନ ପ୍ରବେଶିକା ପରୀକ୍ଷାରେ ଉତ୍ତୀର୍ଣ୍ଣହୋଇ କଲେଜରେ ଅର୍ଥାତ୍ କଟକ ହାଇସ୍କୁଲର ପ୍ରଥମ-ବର୍ଷୀୟ ଶ୍ରେଣୀରେ ଅଧ୍ୟୟନ କଲେ । ଏହିଠାରେ ଉତ୍କଳବନ୍ଧୁ ମଧୁସୂଦନଙ୍କ ସହିତ ତାହାଙ୍କର ପ୍ରଥମ ପରିଚୟ ହୋଇଥିଲା ।

ଏହି ସମୟରେ କ୍ଷୁଦ୍ର କଲେବର ଶିଶୁ 'ଉତ୍କଳ ଦୀପିକା'ରେ ଦେଶର ସମସ୍ତ ଘଟଣା ପ୍ରକାଶିତ ହୋଇ ପାରୁନଥିବାରୁ ପ୍ୟାରୀମୋହନ-ପ୍ରମୁଖ ଯୁବକମାନେ ୧୮୭୧ ଖ୍ରୀଷ୍ଟାବ୍ଦରେ ଅନ୍ୟ ଖଣ୍ଡିଏ ପତ୍ରିକାର ଆବଶ୍ୟକତା ଅନୁଭବ କଲେ । ସେମାନେ ଗୁହା-ସଂଗ୍ରହ କରି ଛାତ୍ରାବସ୍ଥାରେ 'ଉତ୍କଳପୁତ୍ର' ନାମକ ପାକ୍ଷିକ ପତ୍ରିକା ପ୍ରକାଶ କରିବାକୁ ସାହସୀ ହୋଇଥିଲେ । ଉଦ୍‌ଯୋକ୍ତାମାନଙ୍କ ମଧ୍ୟରେ ପଣ୍ଡିତ ଗୋବିନ୍ଦ ରଥ ଜଣେ ପ୍ରଧାନ ଉଦ୍‌ଯୋକ୍ତା ଏବଂ ପ୍ରବନ୍ଧା ଲେଖକ ଥିଲେ ।

ଏହି ପତ୍ରିକାରେ ପ୍ୟାରୀମୋହନଙ୍କର 'ଦରଖାସ୍ତ ସୁଲତାନ୍' ଅର୍ଥାତ୍ 'ଯୋଦ୍ଧାମାନଙ୍କର-ଆବେଦନ' ଶୀର୍ଷକ ତେଜସ୍ୱିନୀ ଭାଷାରେ ଗୋଟିଏ ପ୍ରବନ୍ଧ ବାହାରିଥିଲା । କଟକସହର ନିତାନ୍ତ ଦୁର୍ଦ୍ଦଶାପନ୍ନ ହେବାରୁ ତାର ପ୍ରତିବାଦ ସ୍ୱରୂପ ଉକ୍ତ ପ୍ରବନ୍ଧ ପ୍ରକାଶିତ ହୋଇଥିଲା । ଏହି ଅପରାଧରେ ପ୍ରବନ୍ଧ ଲେଖକ ପ୍ୟାରୀମୋହନ ସ୍କୁଲରୁ ବିତାଡ଼ିତ ହୋଇଥିଲେ ।

ଅଧ୍ୟୟନରେ ଜଳାଞ୍ଜଳି ଦେଇ ପ୍ୟାରୀମୋହନଙ୍କ ମନରେ ଏହି ଭାବ ଦୃଢ଼ୀଭୂତ ହେଲା ଯେ, ଏହି ସହରରେ ଗୋଟିଏ ବେସରକାରୀ ସ୍କୁଲ ହେଲେ, ସରକାର ପକ୍ଷର ପ୍ରଭାବ ଓ ଯଥେଚ୍ଛାଚାର ରହିବ ନାହିଁ । ବକ୍‌ସିବଜାରନିବାସୀ କୃପାନିଧି ସାହୁ ନାମକ ଜଣେ ଧନୀ ମହାଜନଙ୍କର ସେ ସମୟରେ ଗୋଟିଏ ପାଠଶାଳା ଥିଲା । ଏହି ପାଠଶାଳା, ବର୍ତ୍ତମାନ ପ୍ୟାରୀମୋହନ ଏକାଡେମୀର ମୂଳଭିତ୍ତି । ଏହି ବିଦ୍ୟାଳୟରେ ପ୍ୟାରୀମୋହନ ଓ ପଣ୍ଡିତ ଗୋବିନ୍ଦ ରଥ ଦୁହେଁ ଶିକ୍ଷକତା ଆରମ୍ଭ କଲେ । ଏ ଦୁହିଁଙ୍କ ଶିକ୍ଷାଦାନ ପ୍ରଣାଳୀରେ ଆକୃଷ୍ଟ ହୋଇ ବିଦ୍ୟାଳୟର ଛାତ୍ରସଂଖ୍ୟା

ଧନକୁଦନ ଉପର ବଢ଼ିବାରେ ଲାଗିଲା, ତାହା ଏଥିପୂର୍ବରୁ କୁହାଯାଇଛି । ୧୮୭୫ ଖ୍ରୀଷ୍ଟାବ୍ଦରେ ଏହି ପାଠଶାଳାଟି ମଧ୍ୟ-ଇଂରେଜୀ ବିଦ୍ୟାଳୟରେ ପରିଣତ ହେଲା । କ୍ରମଶଃ ଏହା ଉନ୍ନୀତ ହୋଇ ୧୮୭୯ ଖ୍ରୀଷ୍ଟାବ୍ଦରେ ଉଚ୍ଚ ଇଂରାଜୀ ବିଦ୍ୟାଳୟ ରୂପେ ପ୍ରତିଷ୍ଠିତ ହେଲା ।

ପଣ୍ଡିତ ଗୋବିନ୍ଦ ବ୍ୟବସ୍ଥାଶାସ୍ତ୍ର ବା ଆଇନ୍‌ଶାସ୍ତ୍ର ପଢ଼ିନଥିଲେ ମଧ୍ୟ ଆଇନ୍ ବିଷୟରେ ତାଙ୍କର ଜ୍ଞାନ କମ୍ ନଥିଲା । ଆଇନ୍-ବ୍ୟବସାୟୀମାନେ ତାଙ୍କର ଯୁକ୍ତିଯୁକ୍ତ ଓ ଆଇନ୍‌ସଙ୍ଗତ ବକ୍ତୃତା ଶୁଣି ତାଟକା ହୋଇ ଯାଉଥିଲେ । କୌଣସି ମକଦ୍ଦମାରେ କଚେରୀକୁ ଗଲେ, ସେ ଓକିଲ-ମୋକ୍ତାରଙ୍କ ସାହାଯ୍ୟ ଲୋଡ଼ୁ ନ ଥିଲେ । ଅଥଚ ଆଇନ୍-ସଙ୍ଗତ ଭାବରେ ମକଦ୍ଦମା ଚଳାଇ ବିଜୟୀ ହେଉଥିଲେ । ଏ ସମ୍ପର୍କରେ ତାଙ୍କ ଜୀବନରେ ଗୋଟିଏ ଚାଞ୍ଚଲ୍ୟକର ଘଟଣା ଘଟିଥିଲା ଯାହା ତାଙ୍କର ବିଚକ୍ଷଣତା ସମ୍ବନ୍ଧରେ ସୂଚନା ଦେଇଥାଏ । ଗୋଟିଏ ମକଦ୍ଦମାରେ କଟକର ବିଖ୍ୟାତ ଓକିଲ ରାୟ ବାହାଦୁର ଜାନକୀନାଥ ବୋଷ୍ (ନେତାଜୀ ସୁଭାଷଙ୍କ ପିତା) ପଣ୍ଡିତଙ୍କୁ ଜେରା କଲା ସମୟରେ ପଚାରିଲେ—"ଆପଣ 'ଘୋଡ଼ାଉମ୍ବ' ବହି ଲେଖି ପ୍ରକାଶ କରିଛନ୍ତି" ? ଏଥିରେ ତତ୍‌କ୍ଷଣାତ୍ ଉତ୍ତରରେ କହିଲେ—ମୁଁ ତ ଅନେକ ବହି ଲେଖିଛି, ସେଥି ମଧ୍ୟରୁ ଆପଣଙ୍କ ମୁହଁରୁ ଘୋଡ଼ାଉମ୍ବଟି ବାହାରିଲା ?" ଏ କଥାରେ ଜାନକୀବାବୁ ଲଜ୍ଜିତ ହେଲେ । କଚେରୀରେ ହାସ୍ୟର ଲହରୀ ଖେଳିଯାଇଥିଲା । ତାଙ୍କ ବିଚକ୍ଷଣତାରେ କଲେକ୍ଟର ଥିବା ଲୋକେ ମୁଗ୍ଧ ହୋଇ ଯାଉଥିଲେ । ସେ ରାଜପୁରୁଷମାନଙ୍କ ପ୍ରତିକୂଳରେ ଅଟଳ ଅଚଳ ରହି, ବିଚକ୍ଷଣତାର ସହିତ ସେଠାରେ ଅଭିଯାନ

ସେ ସମୟରେ ଚଳାଇଥିଲେ, ତାହା ବୁଝିଥିବା ଗୋବିନ୍ଦଙ୍କ ଛଡ଼ା ଅନ୍ୟ କେହି ସାହସ କରିପାରି ନଥାନ୍ତେ ।

ରଥଙ୍କ ସ୍ପଷ୍ଟବାଦିତାର ଆଉ ଗୋଟିଏ ଉଦାହରଣ ଏଠାରେ ଦେଲେ, ବୋଧହୁଏ ଅସଙ୍ଗତ ହେବ ନାହିଁ । ଲେଖକର ଏହା ପ୍ରତ୍ୟକ୍ଷ ଘଟଣା । ଉତ୍କଳ ସାହିତ୍ୟ-ସମାଜର ଗୃହ ନିର୍ମାଣ (ଏବର ଶ୍ରୀରାମଚନ୍ଦ୍ର ଭବନ) ପୂର୍ବରୁ ଉକ୍ତ ସମାଜର ଅଧିବେଶନମାନ ଟ୍ରେନିଙ୍ଗ୍ ସ୍କୁଲ ଗୃହରେ ଅନୁଷ୍ଠିତ ହେଉଥିଲା । ସେ ସମୟରେ ଅର୍ଥାତ୍ ୧୯୧୩ ମସିହାରେ ଲେଖକ ଟ୍ରେନିଙ୍ଗ୍ ସ୍କୁଲର ଛାତ୍ର । ସେହି ବର୍ଷ ଅଧ୍ୟାପକ ରାୟବାହାଦୁର ଯୋଗେଶଚନ୍ଦ୍ର ରାୟ ମହାଶୟ 'ଇତିହାସେର କଥା' ଶୀର୍ଷକ ଗୋଟିଏ ଗବେଷଣାମୂଳକ ଉପାଦେୟ ପ୍ରବନ୍ଧ ସୁନ୍ଦର ବଙ୍ଗଭାଷାରେ ଲେଖି, ଉକ୍ତ ସମାଜର ବାର୍ଷିକ ଅଧିବେଶନରେ ପଢ଼ିଥିଲେ । ଏହି ପ୍ରବନ୍ଧରେ ଅଧ୍ୟାପକ ମହାଶୟ ପ୍ରସଙ୍ଗକ୍ରମେ ଉତ୍କଳ ମଲୁଆଣ୍ଡି ପଟିରେ ବ୍ରାହ୍ମଣମାନଙ୍କ ଜାତିଚଳାପକୁ ଲକ୍ଷ୍ୟକରି, ଉତ୍କଳୀୟ ବ୍ରାହ୍ମଣ ସମାଜର ଆତ୍ମସମ୍ମାନ ଜ୍ଞାନ ନଥିବା ବିଷୟ ଉଲ୍ଲେଖ କରିଥିଲେ । ସେ ସଭାରେ ଓଡ଼ିଶାର ଶିକ୍ଷିତ ସାହିତ୍ୟିକ ଚନ୍ଦ୍ରମୋହନ ମହାରଣା, ବିଶ୍ୱନାଥ କର, ପଣ୍ଡିତ ମୃତ୍ୟୁଞ୍ଜୟ, ପଣ୍ଡିତ ଗୋବିନ୍ଦ, ପଣ୍ଡିତ ନୀଳକଣ୍ଠ ଓ ପଣ୍ଡିତ ଗୋଦାବରୀଶ ପ୍ରଭୃତି ଉପସ୍ଥିତ ଥିଲେ । ଅଧ୍ୟାପକ ମହାଶୟଙ୍କର ଏହି ଅମୂଳକ ଧାରଣା ସମ୍ବନ୍ଧରେ ତେଜସ୍ୱୀ ଗୋବିନ୍ଦ ତୀବ୍ର ପ୍ରତିବାଦ କରି କହିଲେ—"ମହାଶୟ, ଆପଣ ଜଣେ ବୈଜ୍ଞାନିକ । ଆପଣ ଉତ୍କଳ ବ୍ରାହ୍ମଣ ସମାଜର ଅନ୍ତର ବ୍ୟବହାର ବିଷୟରେ କିଛିମାନ ଜାଣନ୍ତି ନାହିଁ । କେତେଜଣ ଦସ୍ୟୁଶ୍ରେଣୀର ବଙ୍ଗାଳୀଙ୍କୁ ନଜିର ଦେଇ କେହି ଯଦି ସବୁ ବଙ୍ଗାଳୀଙ୍କୁ ଦସ୍ୟୁ କହେ, ଆପଣ ତାହା ସହ୍ୟ କରିବେକି ?

ସେହିଭଳି କେତେକ ଶିକ୍ଷିତ ବ୍ରାହ୍ମଣଙ୍କ ଅକର୍ମକୁ ଆପଣ ସମସ୍ତ ଜାତିର ଚରିତ୍ର ଉପରେ ଆକ୍ଷେପ କରି ଗୁରୁତର ଅନ୍ୟାୟ କରୁ-ଅଛନ୍ତି । ଓଡ଼ିଆ ବ୍ରାହ୍ମଣଙ୍କ ପ୍ରକୃତ ଚରିତ୍ର ଚୈତନ୍ୟହିଁ ବୁଝିଥିଲେ । ଆପଣ ବୈଜ୍ଞାନିକ । ତେଣୁ ଆପଣଙ୍କ ସେ ଶକ୍ତି ନାହିଁ ? ଆପଣଙ୍କ ଭଳି ବିଜ୍ଞବ୍ୟକ୍ତି ଗୋଟିଏ ବିଶିଷ୍ଟ ଜାତିକୁ ଏପରି ହୀନ ଭାବରେ ଆକ୍ରମଣ କରିବା ଗଭୀର ଦୁଃଖ ଓ ଲଜ୍ଜାର କଥା । ଆପଣ ଏହି ଶବ୍ଦଗୁଡ଼ି ପ୍ରବନ୍ଧରୁ ଉଠାଇ ଦେଇ, ପ୍ରବନ୍ଧର ଗୌରବ ରକ୍ଷା କରନ୍ତୁ ।"

ରଥଙ୍କର ଏହି ବଳିଷ୍ଠ ପ୍ରତିବାଦରେ ଅଧ୍ୟାପକ ମହାଶୟ ଅପ୍ରତିଭ ହୋଇ ପଡ଼ିଲେ । ସଭାରେ ଥିବା ବିଶିଷ୍ଟ ବ୍ୟକ୍ତିମାନଙ୍କର, ଏହି ପ୍ରତିବାଦର ସମର୍ଥନ କରିଥିଲେ ଏବଂ ବକ୍ତା ନିଜର ଭୁଲ ବୁଝିପାରି ଉକ୍ତ ଅଭିମତ ପ୍ରତ୍ୟାହାର କରି କ୍ଷମାପ୍ରାର୍ଥନା କରିଥିଲେ ।

ଉତ୍କଳ ଦେଶ ମିଶ୍ରଣ ଉତ୍ସବରେ ପଣ୍ଡିତ ଗୋଦାବରୀଶ 'ଲକ୍ଷ୍ୟଦର୍ଶନ' ନାମକ ଗୋଟିଏ କବିତା ଜନତା ଦରବାରରେ ବିତରଣ କରିଥିଲେ । ସେଥିରୁ ତାଙ୍କର ଦେଶପ୍ରୀତି କିପରି ଥିଲା, ତାହା ଜଣାଯାଏ । ତାହା ଏହି--

"କହିବା ଦୁକଥା ଶୁଣିବ ଆପଣ,
ନାହିଁ ତହିଁ କିଛି ବଡ଼ାଣିଆ ପଣ ।
ଅନୁଭବେ ସିଦ୍ଧ ଯାହା ହୁଏ ଜାଣି,
ସେ'ଟି ଅଟେ ସିନା ପ୍ରାର୍ଥନା ବାଣୀ ।
ସହଜରେ ଦଅ ସୁରସ୍ବର ଦାନ,
ସଂଶୋଧନକର ଏ ଦଣ୍ଡ ବିଧାନ ।

ସୁମାର୍ଜିତ ହେଉ କାଗଜାତ ମାନ୍,
ଦେଶୀମାନେ ଦେଖେ ରଖିବ ପ୍ରମାଣ ।
ଅସଂଖ୍ୟ ଆଇନବନ୍ଧା ବିଧିମାନ,
ମଧ୍ୟେ ମଣ୍ଡ ଅନ୍ଧେ ହେଉ ହତ ଜ୍ଞାନ ।
ଜଙ୍ଗଲର ପାଇଁ ସ୍ୱଚ୍ଛନ୍ଦ ବିଧାନ,
କଷଦାଅ ଲଟ ପ୍ରାର୍ଥନା କାରଣ ।
ଗଂଜାମ, ସମ୍ବଲପୁରକୁ ଏଥର,
କଟକ ସଙ୍ଗରେ ଆଣି ଯୋଗକର ।
ରେଲଷ୍ଟକ ପାତ ହେଲାତ ଦେଶର,
ଅଜ୍ କାହାପାଇଁ ବିଳମ୍ବ ଏଥର ।
କୃଷି ପ୍ରଧାନ ଏ ଦେଶ ନବଲାଟ,
ଜଳରକ୍ଷା ପାଇଁ କର ଜଳବାଟ ।
ପଙ୍କେ ନିମଜ୍ଜିତ ସବଯୋର ପାଟ ।
ଅଜନ୍ମଣ କଲେ ବାର ବାହକ,
ପଡ଼ଯାଏ ଦେଶେ ହାହାକାର ଡାକ ।
ଅଗ୍ନିଟାଣ ହୁଏ ଶସ୍ୟକ୍ଷେତ ପାକ,
ଶୂନ୍ୟ ଧାନ୍ୟାଗାର କ୍ଷୁଦା କରିବାକ—
—ଘାର କୃଷକର ବହର ଲୋତକ ।
ଭାରତେଶ୍ୱରୀଙ୍କ କହିବ ଅପଣି,
ବଡ଼ ନିରୀହଟି ଜଙ୍ଗଲୀୟୁଗଣ ।
କରନ୍ତି ସର୍ବଦା ଶାକାନ୍ନ ଭୋଜନ,
ତେଣୁ ରାଜଭକ୍ତି ସ୍ୱଭାବ ବିଧାନ ।
ତାମସିକ ନୁହେ ତାହାଙ୍କ ସ୍ୱଭାବ,
ରଖିଥିବ ତାଙ୍କ ପ୍ରତି ଦୟାଭାବ ।

ଦେବଥିବ ରାଜଦ୍ୱାରେ ବେଳେ ଠାବ,
ଭାଳେ ଭାଳେ ରହେ ସନ୍ତୋଷ ଥିବ ।"

× × × ×

## —ଆଚାର ବ୍ୟବହାର—

ରଥେ ଆଧୁନିକ ଶିକ୍ଷିତ ସମାଜର ଘନିଷ୍ଠ ସଂସର୍ଗରେ ଆସି ସୁଦ୍ଧା ନିଜର ମୌଳିକ ବ୍ୟବହାର ପ୍ରତି ତୀକ୍ଷ୍ଣ ଦୃଷ୍ଟି ରଖୁଥିଲେ । ସେ ପ୍ରତ୍ୟହ ସ୍ନାନ କରିସାରି 'ସନ୍ଧ୍ୟା ତର୍ପଣ' ଓ ପୂଜା ପ୍ରଭୃତି ନିତ୍ୟକର୍ମ ଶେଷ ନହେବା ପର୍ଯ୍ୟନ୍ତ ଜଳଗ୍ରହଣ କରୁନଥିଲେ । ବ୍ରତ, ଉପବାସ ପ୍ରଭୃତି ଶାସ୍ତ୍ରୀୟ ପରମ୍ପରା ବିଧିରେ ପାଳନ କରୁଥିଲେ । ମୋଟାମୋଟି କହିବାକୁ ଗଲେ—ଉତ୍କଟ ଆଧୁନିକତା ତାହାଙ୍କୁ ଗ୍ରାସ କରିବା ଦୂରେଥାଉ, ସ୍ପର୍ଶ ସୁଦ୍ଧା କରିପାରି ନଥିଲା । ସେ ନିଜ ଜୀବନରେ ଲକ୍ଷାଧିକ ଟଙ୍କା ଉପାର୍ଜନ କରିଥିଲେ । ହେଲେହେଁ ବିଳାସ ବ୍ୟସନର ଛାଇପାଖ ମାଡ଼ିନଥିଲେ । ସେ ସର୍ବଦା ନିରାଡ଼ମ୍ବର ଭାବରେ କଟକ ସହରରେ ମୃତ୍ୟୁ ପର୍ଯ୍ୟନ୍ତ ରହିଥିଲେ ।

## —ସାନଭାଇ ରାମଚନ୍ଦ୍ର—

୧୮୫୨ ମସିହା ଭାଦ୍ର କୃଷ୍ଣ ଚତୁର୍ଥୀ, ଗୋବିନ୍ଦଙ୍କ ସାନଭାଇ ପଣ୍ଡିତ ରାମଚନ୍ଦ୍ରଙ୍କ ଜନ୍ମଦିନ । ଏହାଙ୍କ ଖୁଡ଼ୁତା ବାଞ୍ଛାନିଧି ରଥେ ନିଃସନ୍ତାନ ଥିବାରୁ, ରାମଚନ୍ଦ୍ରଙ୍କୁ ପୋଷ୍ୟପୁତ୍ର କରିଥିଲେ । ରାମଚନ୍ଦ୍ରଙ୍କ ଜନ୍ମ ହେବାର ଛଅମାସ ପରେ ନିଜପିତା ଓ ଖୁଡ଼ୁତା ବାଞ୍ଛାନିଧି ରଥେ, ଉଭୟେ ଅକାଳରେ କାଳ ଗ୍ରାସରେ ପଡ଼ିଲେ । ତେଣୁ ଗୋବିନ୍ଦ ଓ ରାମଚନ୍ଦ୍ରଙ୍କ ଲାଳନପାଳନ ଭାର, ପିତାମହ

ଅପର୍ତ୍ତି ରଥ ଓ ବିଧବା ମାତାଙ୍କ ଉପରେ ପଡ଼ିବା କଥା ପୂର୍ବେ କୁହା ଯାଇଛି । ଗୋବିନ୍ଦ ମାଇନର୍ ସ୍କୁଲରେ ପଢ଼ିବା ସମୟରେ ରାମଚନ୍ଦ୍ର ସାନଖୁଡ଼ୀତା କୃପାସିନ୍ଧୁଙ୍କ ନିକଟରେ ସଂସ୍କୃତ ବ୍ୟାକରଣ ପଢ଼ୁଥିଲେ । ଏହି ସମୟରେ ସେ ମାରାତ୍ମକ ବସନ୍ତ ରୋଗରେ ପୀଡ଼ିତ ହେଲେ । ସୌଭାଗ୍ୟବଶତଃ ଆରୋଗ୍ୟଲାଭ କଲାପରେ ବିଦ୍ୟା-ନଗରୀ କାଶୀଧାମରେ ପଢ଼ିବାପାଇଁ ତାଙ୍କର ବିଶେଷ ଆଗ୍ରହ ହେଲା । ଦିନେ ଅଧରାତ୍ରରେ ଗୋପନରେ ଘରୁ ବାହାରି 'କାଶୀ' ଅଭିମୁଖେ ଯାତ୍ରା ଆରମ୍ଭ କରିଦେଲେ । ସେ ସମୟରେ ରେଳପଥର ସୁବିଧା ନ ଥିବାରୁ ଚାଲିଚାଲି ବହୁକଷ୍ଟ ସହି 'କାଶୀ'ରେ ପହଞ୍ଚିଲେ ।

ଏହାପରେ ବହୁ ଅନୁସନ୍ଧାନକରି କାଶୀରାଜାଙ୍କ ଧର୍ମାର୍ଥ ବିଦ୍ୟାଳୟରେ ବିଶୁଦ୍ଧାନନ୍ଦ ସରସ୍ୱତୀଙ୍କ ନିକଟରେ ପଢ଼ିବାରେ ଲାଗିଲେ । ସାନଭାଇର ହଠାତ୍ ବିଦେଶ ଯିବା କଥା ଶୁଣି ଗୋବିନ୍ଦ ଅସ୍ଥିର ହୋଇ ପଡ଼ିଲେ । କିଛିଦିନ ପରେ ରାମଚନ୍ଦ୍ରଙ୍କଠାରୁ ପତ୍ର ପାଇ ଆଶ୍ୱସ୍ତ ହେଲେ । ସେଠାରେ ରାମଚନ୍ଦ୍ର ବ୍ୟାକରଣ, ନ୍ୟାୟ, ବେଦାନ୍ତ ପ୍ରଭୃତି ଦର୍ଶନ ଶାସ୍ତ୍ରରେ ଜଣେ ଧୁରନ୍ଧର ପଣ୍ଡିତ ବୋଲି ସାଧାରଣରେ ପରିଚିତ ହେଲେ । ଏହାଙ୍କର ସରଳ ମଧୁର ବ୍ୟବହାରରେ ସ୍ୱାମୀ ବିଶୁଦ୍ଧାନନ୍ଦ ଏହାଙ୍କୁ ଖୁବ୍ ସ୍ନେହ କରୁଥିଲେ । ସେଠାରେ ପ୍ରାୟ ଦଶବର୍ଷ ପଢ଼ିଲା ପରେ ସେ ଘରକୁ ଫେରି ଆସିଲେ । ଗାଁରେ ଯାହା ଭୂସମ୍ପତ୍ତି ଥିଲା, କେହି ଦେଖାଶୁଣା କରିବାକୁ ନଥିବାରୁ, ତାହା ନାରଖାର ହେବାରେ ଲାଗିଲା । ପଣ୍ଡିତ ଗୋବିନ୍ଦ ଏ ବିଷୟ ରାମଚନ୍ଦ୍ରଙ୍କୁ ଜଣାଇ, ଗାଁକୁ ଆସିବାକୁ ଲେଖିଲେ । ତେଣୁ ସେ ବାଧ୍ୟ ହୋଇ 'କାଶୀ' ଛାଡ଼ିଲେ ।

ପଣ୍ଡିତ ରାମଚନ୍ଦ୍ର ନିଜ ଘରେ ସଂସ୍କୃତ ଟୋଲଟିଏ ବସାଇଲେ । ବହୁ ଦରିଦ୍ର ଛାତ୍ର ଏହି ଟୋଲରେ ପଢ଼ିବାରେ ଲାଗିଲେ । ସରକାର ଏହି ଟୋଲକୁ ମାସିକ ଟ ୯୪ ଙ୍କା ଗ୍ରାଣ୍ଟ୍ ଦେଉଥିଲେ । ରାମଚନ୍ଦ୍ର କେତେକ ଗରିବ ଛାତ୍ରଙ୍କୁ ଅର୍ଥିକ ସାହାଯ୍ୟ ମଧ୍ୟ କରୁଥିଲେ । ସେ ଏହି ଅଞ୍ଚଳରେ 'କାଶୀ' ପଣ୍ଡିତ ବୋଲି ଖ୍ୟାତି ଅର୍ଜିଥିଲେ । ରାମଚନ୍ଦ୍ରଙ୍କୁ ଘରେ ରଖାଇ, ପଣ୍ଡିତ ଗୋବିନ୍ଦ ନିଶ୍ଚିନ୍ତ ମନରେ ନିଜ କର୍ତ୍ତବ୍ୟରେ ଲାଗି ରହିଲେ ।

## —ଅନ୍ତିମ ସମୟ—

ପୁରୀ ଜିଲ୍ଲା, ବୀରନରସିଂହପୁର ଶାସନର କୁଳୀନ ପରିବାରରେ ରଥେ ବିବାହ ହୋଇଥିଲେ । ସେ କିନ୍ତୁ କାଳ ଗୃହସ୍ଥାଶ୍ରମ କଲା ପରେ, ଭାର୍ଯ୍ୟାଙ୍କୁ ହରାଇ ବସିଲେ । ପୁଣି ବିବାହ କରିବା ପାଇଁ ଆତ୍ମୀୟମାନେ କେତେ ତାଙ୍କୁ ପ୍ରବର୍ତ୍ତାଇଲେ । କିନ୍ତୁ ସେ ବିବାହ ପ୍ରସ୍ତାବରେ ରାଜି ହେଲେନାହିଁ । ଗୃହସ୍ଥାଶ୍ରମ ଭାଙ୍ଗିଯିବା ଫଳରେ ସାଧାରଣ କ୍ଷେତ୍ରରେ କାର୍ଯ୍ୟ କରିବାର ସୁବିଧା ଓ ସୁଯୋଗ ତାଙ୍କୁ ମିଳିଥିଲା । ଗୋବିନ୍ଦ ଅପୁତ୍ରିକ ଥିବାରୁ ପୁତ୍ର ଜଗନ୍ନାଥଙ୍କୁ ପୋଷ୍ୟପୁତ୍ର କରିଥିଲେ । ଏବେ ତାଙ୍କ ନାତି ମୃତ୍ୟୁଞ୍ଜୟ ନିଜଗାଁରେ ରହୁଛନ୍ତି ।

କଟକରେ କର୍ମମୟ ଜୀବନରେ ବାନ୍ଧି ହୋଇ ରହିବା ମଧ୍ୟରେ ପଣ୍ଡିତ ଗୋବିନ୍ଦ ହଠାତ୍ ଜ୍ୱରରୋଗରେ ଅସୁସ୍ଥ ହୋଇ ପଡ଼ିଲେ । ଜ୍ୱର କ୍ରମେ କ୍ରମେ ବଢ଼ିବାରେ ଲାଗିଲା । ଏ ଖବର ପାଇ, ସାନଭାଇ ରାମଚନ୍ଦ୍ର କଟକ ଧାଇଁ ଆସିଲେ । ବଡ଼ ବଡ଼ ଡାକ୍ତର ଓ କବିରାଜଙ୍କ ପରାମର୍ଶରେ ଚିକିତ୍ସା କରାଗଲା । ଜ୍ୱର ଭଲ ହେଉ ନ ହେଉଣୁ ପୁଣି ଅଉ ଗୋଟିଏ ରୋଗ ବାହାରିଲା—ଏହା

ହେଉଛି କ୍ଷୟିତଧାର ରୋଗ । ଯଥାର୍ଥରେ—"ବଡ଼ କୁଟିଳ ବଡ଼ ଅଭିଶାପୀ, ହାତବୋଳିଯିବ ସେ ଅଚମ୍ବିତେ ଆସି", ସେଇଆ ହେଲା । ଗୋବନ୍ଦ, ଅନ୍ତିମ ସମୟ ନିକଟ ହୋଇ ଆସିବାର ଜାଣି, ଔଷଧ ଖାଇଲେ ନାହିଁ । ଶେଷ ନିଶ୍ୱାସ ଛାଡ଼ିବା ପର୍ଯ୍ୟନ୍ତ ବେଶ୍ କଥା ବାର୍ତ୍ତା ହେଉଥାନ୍ତି । ରାମଚନ୍ଦ୍ରଙ୍କ ସବୁ ସମ୍ପତ୍ତିର ଭାର ସମର୍ପିଦେଇ ତାଇଶି ଦିନ ରୋଗ ଭୋଗିଲା ପରେ ଇହଧାମ ଛାଡ଼ିଲେ । ଏଇଦିନଟି ହେଉଛି—୧୯୧୮ ମସିହା ମେ ମାସ ୨୮ ତାରିଖ । ସେତେବେଳକୁ ରଥଙ୍କ ସତୁରି ବର୍ଷ ବୟସ ।

ନିମିଚଉଡ଼ିର ନାମଜାଦା ବ୍ୟବସାୟୀ 'ପୀରୁମିଆଁ'ଙ୍କ ସାଙ୍ଗରେ ରଥଙ୍କର ମାଲିମକଦ୍ଦମା ବରାବର ଲାଗି ରହିଥିଲା । ସେ ରଥଙ୍କର ଥିଲେ ଜଣେ—ଦୁଷ୍ମଣନ୍ । ଉଭୟେ ମାଲିମକଦ୍ଦମାରେ ବହୁ ଅର୍ଥଶ୍ରାଦ୍ଧ କରିଥିଲେ । କିନ୍ତୁ ଗୋବନ୍ଦଙ୍କ ମୃତ୍ୟୁସମ୍ବାଦ ଶୁଣିଲାକ୍ଷଣି ମିଆଁ ସାହେବ ପୂର୍ବଶତ୍ରୁତାକୁ ଫିଙ୍ଗିଦେଇ, ଧାଇଁ ଆସିଲେ—ରଥଙ୍କ ବସାକୁ, ରାମଚନ୍ଦ୍ରଙ୍କ ସଙ୍ଗେ ବସୁରହିବ ରଥଙ୍କର 'ଶେଷକୃତ୍ୟ'ର ବ୍ୟବସ୍ଥାରେ ଲାଗିଲେ । ବହୁଦିନରୁ ଲାଗି ରହିଥିବା ବିବାଦ ଆଉ ରହିଲା ନାହିଁ । ମିଆଁଙ୍କର ଏପରି ଉଦାରତା ଯଥାର୍ଥରେ ପ୍ରଶଂସାର୍ହ । ରଥଙ୍କ ମୃତ୍ୟୁପରେ ନିମିଚଉଡ଼ି ବାସଭବନରେ ବହୁ ଛାତ୍ର ରହି ପଢ଼ିବାରେ ଲାଗିଲେ । ଛାତ୍ରମାନେ ଏଇ ଘରଟିର ନାଁ ଦେଲେ—"ଗୋବନ୍ଦରଥ ଲଜ୍ ।"

ରଥଙ୍କ ମୃତ୍ୟୁର ପୂର୍ବବର୍ଷ ତାଙ୍କର ଅନ୍ତରଙ୍ଗ ବନ୍ଧୁ ଗୌରୀଶଙ୍କର ଇହଧାମରୁ ବିଦାୟ ନେଇଥିଲେ । ପଣ୍ଡିତ ରଥଙ୍କର ମୃତ୍ୟୁର ଦୁଇକୋଡ଼ିଏ ଦିନ ପରେ ବ୍ୟାସକବି ଫକୀରମୋହନ ସଂସାର ଛାଡ଼ିଲେ । ଓଡ଼ିଶାର ଏହି କୃତସନ୍ତାନମାନେ ଅଳ୍ପଦିନ ଭିତରେ

ଉତ୍କଳଭକ୍ତ ହୋଇ ଗଲ୍ପର ଗୁଣିଗଲେ । ଏ ଦେଶରୁ ଉତ୍କୋଟି ସମୁଜ୍ଜ୍ୱଳ ଜ୍ୟୋତିଷ୍କ ଚିରକାଳ ପାଇଁ ଅସ୍ତହୋଇଗଲେ ।

ଆମେମାନେ ବୀର-ପୂଜା ଶିଖିଲୁ ପରି ଜଣାପଡ଼ୁନାହିଁ । ଏବେ କେତେବର୍ଷ ହେଲା ସ୍ଥାନେ ସ୍ଥାନେ କେତୋଟି 'କର୍ମବୀର'ଙ୍କ ପୂଜା ସୀମାବଦ୍ଧ ଭାବରେ ହେବାର ସଂବାଦ ମିଳେ । ଏପରି କ୍ଷୀଣଉଦ୍ୟମରେ ଜାତି ଜାଗ୍ରତ ହେଲାଭଳି ଜଣାଯାଉ ନାହିଁ । ରାଧାନାଥ, ମଧୁସୂଦନ ପ୍ରଭୃତିଙ୍କ ଶତ ସତ୍ତ୍ୱରେ ମୁଷ୍ଟିମେୟ ଲୋକଙ୍କ ସମାଗମ ଜାତୀୟପକ୍ଷରେ ଘୋର ଲଜ୍ଜା ଓ କଳଙ୍କର କଥା । ଉପେନ୍ଦ୍ରଭଞ୍ଜ, ଦୀନକୃଷ୍ଣ, କବିସୂର୍ଯ୍ୟ ପ୍ରଭୃତି ପ୍ରତ୍ୟେକ କବିଙ୍କ ପ୍ରତିଭାର ଯଥୋଚିତ ଆଦର ଏ ପର୍ଯ୍ୟନ୍ତ ଏଦେଶରେ ହୋଇ ନାହିଁ । ଏହାଙ୍କ ପରବର୍ତ୍ତୀ ପ୍ରତିଭାବାନ୍ ବ୍ୟକ୍ତିଙ୍କ ମଧ୍ୟରୁ ଏ ପର୍ଯ୍ୟନ୍ତ ବାକି ତାଲିକାରେ ଅନେକ ରହିଛନ୍ତି । ପ୍ୟାରୀମୋହନ, ଗୌରୀଶଙ୍କର ଯେଉଁ ଅନୁଷ୍ଠାନ ସହିତ ଘନିଷ୍ଠ ଭାବରେ ସଂପୃକ୍ତ ଥିଲେ, ସେମାନଙ୍କର ପୂଜା, ସେହି ଅନୁଷ୍ଠାନର ଦ୍ୱାରବନ୍ଧ ଡେଇଁ ବାହାରକୁ ବାହାର-ନାହିଁ । ଏମାନେ କୌଣସି ବିଶେଷ ଅନୁଷ୍ଠାନ ସହିତ ସଂପୃକ୍ତ ଥିଲେ ମଧ୍ୟ, ସେହି ଅନୁଷ୍ଠାନ ଜାତିର—ବ୍ୟକ୍ତିବିଶେଷଙ୍କର ନୁହେଁ । ଜନସେବୀ ପଣ୍ଡିତ ଗୋବିନ୍ଦ ଯେଉଁ ଅଞ୍ଚଳ ପାଇଁ ଜୀବନରେ ଭୟଙ୍କର ପରିସ୍ଥିତିର ସମ୍ମୁଖୀନ ହୋଇଥିଲେ, ସେହି ଅଞ୍ଚଳରେ ବନ୍ଧୁଙ୍କପରି ସେ ଅପୂଜ୍ୟ ହୋଇ ରହିଛନ୍ତି । ଜଗତର ଯେଉଁ ପବିତ୍ର ଅନୁଷ୍ଠାନର ମୂଳଭିତ୍ତି ସ୍ଥାପନରେ ଜନସେବୀ ଗୋବିନ୍ଦ ତ୍ୟାଗପୂତ ଜୀବନ ଅରମ୍ଭ କରିଥିଲେ, ସେଠାରେ 'ବ୍ରହ୍ମା' ପାଳିହେବା ମଧ୍ୟ ଦୁଃଖ ଓ ପରିତାପର କଥା । ଏକ ଐତିହାସିକ ପୁରୁଷଙ୍କ ପୂଜ୍ୟପୂଜା ବ୍ୟତିକ୍ରମରେ ଜାତିର ପରବର୍ତ୍ତୀ ବଂଶଧର-ମାନେ କାହାକୁ ଦାୟୀ କରିବେ ?

ଦେଶପ୍ରାଣ ପଣ୍ଡିତ ଗୋପବନ୍ଧୁଙ୍କର ମହାପ୍ରୟାଣ ଜୀବନ ଚରିତ ପୂର୍ଣ୍ଣାଙ୍ଗ ହୋଇ ବାହାରିନାହିଁ । କେବଳ ପ୍ରତିମୂର୍ତ୍ତି ସ୍ଥାପନରେ ଜାତିର ଭାବୀ ବଂଶଧରମାନେ ପ୍ରେରଣା ପାଇବେ ନାହିଁ । ଯେଉଁମାନେ ଏହି ମହତ୍ କାର୍ଯ୍ୟ କରିପାରନ୍ତେ, ସେମାନେ ଚତୁର୍ଥାବସ୍ଥାରେ ପହଞ୍ଚିଲେଣି । ଅନ୍ତ କେବେ ହେବ, ତାହା ଅନ୍ତର୍ଯାମୀ ଜାଣନ୍ତି ।

ଦେଶ ସ୍ୱାଧୀନ ହେଲାପରେ ଏଇସବୁ ଜାତୀୟ ଅନୁଷ୍ଠାନ ପ୍ରତି ଯୁବକମାନେ ଆଗ୍ରହୀ ହେବା ସର୍ବଥା ଉଚିତ । ଏ ଜାତୀୟ ସମ୍ପଦର ଯଥାର୍ଥ ଦାୟାଦ—ଦେଶର ଯୁବକମାନେ । ବିଧାତା କରନ୍ତୁ—ଦେଶର ଯୁବକଙ୍କ ଜାଗ୍ରତ ହେଉ ।

"କର୍ମେ ଜୀର୍ଣ୍ଣନବ, କର୍ମ ଏକାଠାର ଜୀବନର ମାନ ଦଣ୍ଡ ।"

ସ ମା ପ୍ତ

ବ୍ରହ୍ମପୁର ନିଉ ଷ୍ଟୋର୍ସ ପ୍ରେସ୍‌ରେ ଶ୍ରୀ ଘନଶ୍ୟାମ ଦାଶଙ୍କଦ୍ୱାରା ମୁଦ୍ରିତ

# —ଅମର ଚରିତମାଳା—

ଶ୍ରୀ ଗୋଦାବରୀଶ ମହାପାତ୍ର, ଶ୍ରୀ କୃଷ୍ଣଚନ୍ଦ୍ର କର, ଅଧ୍ୟାପକ ଶ୍ରୀଧର ଦାସ, ଶ୍ରୀ ଭଗବାନ ପଣ୍ଡା, ଶ୍ରୀ ଚନ୍ଦ୍ରମଣି ଆଚାର୍ଯ୍ୟ, ପଣ୍ଡିତ ନରସିଂହ ମହାପାତ୍ର, ଶ୍ରୀ ପର୍ଶୁରାମ ହରିଚନ୍ଦନ, ପଣ୍ଡିତ ସଦାଶିବ ରଥ ଶର୍ମା, ଅଧ୍ୟାପକ ଗୌରୀ-କୁମାର ବ୍ରହ୍ମା, ଅଧ୍ୟାପକ ସର୍ବେଶ୍ୱର ଦାସ, ଶ୍ରୀ କାଳିଆ ପାଣିଗ୍ରାହୀ ପ୍ରଭୃତିଙ୍କ ଲିଖିତ । ପ୍ରତ୍ୟେକଟି ସଚିତ୍ର ।

| | |
|---|---|
| ୧ । ଖାରବେଳ | ୨ । କପିଳେନ୍ଦ୍ର ଦେବ |
| ୩ । ଫକୀରମୋହନ | ୪ । ପ୍ରତାପରୁଦ୍ର ଦେବ |
| ୫ । ଶ୍ରୀରାମଚନ୍ଦ୍ର ଭଞ୍ଜ | ୬ । ଭକ୍ତକବି ମଧୁସୂଦନ |
| ୭ । ସୂଢ଼ଳ ଦେବ | ୮ । ମୁକୁନ୍ଦ ଦେବ |
| ୯ । ପୁରୁଷୋତ୍ତମ ଦେବ | ୧୦ । ରାଧାନାଥ |
| ୧୧ । କୁଳବୃଦ୍ଧ ମଧୁସୂଦନ | ୧୨ । ଉତ୍କଳମଣି ଗୋପବନ୍ଧୁ |
| ୧୩ । ଚନ୍ଦ୍ରଶେଖର | ୧୪ । ଶୂଦ୍ରମୁନି ସାରଳା |
| ୧୫ । ଗୌରୀଶଙ୍କର | ୧୬ । ଗଙ୍ଗାଧର ମେହେର |
| ୧୭ । କବିସୂର୍ଯ୍ୟ | ୧୮ । ସାଧୁ ସୁନ୍ଦର ଦାସ |
| ୧୯ । ନନ୍ଦକିଶୋର ବଳ | ୨୦ । ଯଯାତି କେଶରୀ |
| ୨୧ । ଜୟଦେବ | ୨୨ । ଚୋଳଗଙ୍ଗ ଦେବ |
| ୨୩ । ଅନଙ୍ଗଭୀମ ଦେବ | ୨୪ । ବିଶ୍ୱନାଥ କର |
| ୨୫ । ଗୋବିନ୍ଦ ରଥ | ୨୬ । ଜଗନ୍ନାଥ ଦାସ |
| ୨୭ । ପଣ୍ଡିତ କୃପାସିନ୍ଧୁ | ୨୮ । କୃତ୍ତିବାସ ପାଟଶାଣୀ |
| ୨୯ । ଜୟୀ ରାଜଗୁରୁ | ୩୦ । ଋଷି ଖୁଣ୍ଟିଆ |
| ୩୧ । ଉପେନ୍ଦ୍ର ଭଞ୍ଜ | ୩୨ । କୁନ୍ତଳାକୁମାରୀ ସାବତ |
| ୩୩ । ନୀଳମଣି ବିଦ୍ୟାରତ୍ନ | ୩୪ । ଦେଶସେବକ ନରସିଂହ ଦାସ |

ପ୍ରତ୍ୟେକର ମୂଲ୍ୟ ଛଅ ଅଣା

# ଆମ ପଡ଼ିଶା ଅଡ଼ିଶା ସିରିଜ୍

ଲେଖକ—ପଣ୍ଡିତ ଗୋଦାବରୀଶ ମିଶ୍ର

୧ । ଅଷ୍ଟ୍ରେଲିଆ
୨ । ଦକ୍ଷିଣ ଆଫ୍ରିକା
୩ । ପଶ୍ଚିମ ଗୋଲାର୍ଦ୍ଧ
୪ । ମଧ୍ୟ ଆମେରିକା
୫ । ଗ୍ରେଟ୍ ବ୍ରିଟେନ୍

ପ୍ରତ୍ୟେକରେ ସେହି ଦେଶମାନଙ୍କର ଭୌଗୋଳିକ, ସାମାଜିକ ଓ ରାଜନୈତିକ ବିବରଣୀ ସରଳ ଭାଷାରେ ଦିଆଯାଇଛି ।

"ଗ୍ରେଟ୍ ବ୍ରିଟେନ୍"—ସମ୍ପୂର୍ଣ୍ଣ ନୂଆ ବହି ।

ପ୍ରତ୍ୟେକ ବହିର ମୂଲ୍ୟ ଛଅ ଅଣା

---

ଅଧ୍ୟାପକ ଗୋକୁଳାନନ୍ଦ ମହାପାତ୍ରଙ୍କ ପ୍ରଣୀତ—

# ଅଜାଙ୍କ ମଜାକଥା

( ପିଲାଙ୍କ ପାଇଁ ଶିଳ୍ପ-ବିଜ୍ଞାନମୂଳକ ଗଳ୍ପ )

(୧) କାଚ କଥା
(୨) କାଗଜ କଥା
(୩) ଚିନି କଥା
(୪) ସାର କଥା
(୫) କିରାସିନି କଥା

ପ୍ରତିଖଣ୍ଡ ଆଠ ଅଣା

ଶ୍ରୀ ଉଦୟନାଥ ଷଡ଼ଙ୍ଗୀଙ୍କ ପ୍ରଣୀତ

# ଗ୍ରହ ଉପଗ୍ରହ ସିରିଜ୍

## ଶିଶୁମାନଙ୍କ ପାଇଁ ବିଜ୍ଞାନ ରାଜ୍ୟର
## ନୂତନ ଆଲୋକ

୧ । ସୂର୍ଯ୍ୟ    ୩ । ଚନ୍ଦ୍ର
୨ । ପୃଥିବୀ    ୪ । ମଙ୍ଗଳ
୫ । ଆକାଶ ମଣ୍ଡଳ

ପ୍ରତ୍ୟେକଟି ସଚିତ୍ର । ପ୍ରତ୍ୟେକର ମୂଲ୍ୟ ଟ ୦ ।/

---

ସ୍ୱର୍ଗତ ଶିଶୁ ସାହିତ୍ୟିକ ରାମଚନ୍ଦ୍ର ଆଚାର୍ଯ୍ୟଙ୍କ ପ୍ରଣୀତ

# ହିତ କଥା ସିରିଜ୍

ସଂସ୍କୃତ 'ହିତୋପଦେଶ କଥା'ର ଅବଲମ୍ବନରେ ଲିଖିତ ।

୧ । ପ୍ରଥମ ଭାଗ—ମିତ୍ରଲାଭ    ୩ । ତୃତୀୟ ଭାଗ—ବିଗ୍ରହ
୨ । ଦ୍ୱିତୀୟ ଭାଗ—ସୁହୃଦ୍‌ଭେଦ    ୪ । ଚତୁର୍ଥ ଭାଗ—ସନ୍ଧି

ପ୍ରତ୍ୟେକଟି ସଚିତ୍ର । ପ୍ରତ୍ୟେକର ମୂଲ୍ୟ ଟ ୦ ।୶

ନୂତନ ସଂସ୍କରଣ ପ୍ରକାଶ ପାଉଛି ।

ପ୍ରକାଶକ—

## ନିଉ ଷ୍ଟୁଡେଣ୍ଟସ୍ ଷ୍ଟୋର୍ସ ଲି:

ଓଡ଼ିଶାରେ ପ୍ରସିଦ୍ଧ ଶିଶୁ ସାହିତ୍ୟିକମାନଙ୍କ ଦ୍ୱାରା ସଙ୍କଳିତ

# ଅମର ଚରିତମାଳା

## ପ୍ରତ୍ୟେକର ମୂଲ୍ୟ ଛଅ ଅଣା

୧ । ଜୟଦେବ
୨ । ଜଗନ୍ନାଥ ଦାସ
୩ । ସାଧୁସୁନ୍ଦର ଦାସ
୪ । ସାରଳା ଦାସ
୫ । ଉପେନ୍ଦ୍ର ଭଞ୍ଜ
୬ । କବିସୂର୍ଯ୍ୟ
୭ । ରାଧାନାଥ ରାୟ
୮ । ଗଙ୍ଗାଧର ମେହେର
୯ । ନନ୍ଦକିଶୋର ବଳ
୧୦ । ଫକୀରମୋହନ
୧୧ । ଚନ୍ଦ୍ରଶେଖର
୧୨ । ବିଶ୍ୱନାଥ କର
୧୩ । କୁନ୍ତଳା କୁମାରୀ
୧୪ । ଗୋବିନ୍ଦ ରଥ
୧୫ । ଜୟୀ ରାଜଗୁରୁ
୧୬ । ବୃଷ ଖୁଣ୍ଟିଆ
୧୭ । କୃତ୍ତିବାସ ପଟ୍ଟସାଣି
୧୮ । ଉତ୍କଳମଣି ଗୋପବନ୍ଧୁ
୧୯ । କୁଳବୃଦ୍ଧ ମଧୁସୂଦନ
୨୦ । କର୍ମଯୋଗୀ ଗୌରୀଶଙ୍କର
୨୧ । ପଣ୍ଡିତ କୃପାସିନ୍ଧୁ
୨୨ । ନରସିଂହ ଦାସ
୨୩ । ନୀଳମଣି ବିଦ୍ୟାରତ୍ନ
୨୪ । ଖାରବେଳ
୨୫ । ଯଯାତିକେଶରୀ
୨୬ । ଚୋଡ଼ଗଙ୍ଗ ଦେବ
୨୭ । ଅନଙ୍ଗଭୀମ ଦେବ
୨୮ । କପିଳେନ୍ଦ୍ର ଦେବ
୨୯ । ପୁରୁଷୋତ୍ତମ ଦେବ
୩୦ । ପ୍ରତାପରୁଦ୍ର ଦେବ
୩୧ । ମୁକୁନ୍ଦଦେବ
୩୨ । ଶ୍ରୀ ରାମଚନ୍ଦ୍ର ଭଞ୍ଜ
୩୩ । ସୁଢ଼ଳ ଦେବ
୩୪ । ଉତ୍କଳର ମଧୁସୂଦନ
୩୫ । ଗୋପାଳ ପ୍ରହରାଜ
୩୬ । ଶଶିଭୂଷଣ ରାୟ

ପ୍ରକାଶକ—

ନିଉ ଷ୍ଟୁଡେଣ୍ଟସ୍ ଷ୍ଟୋର୍ସ କଟକ